# ଅଖ ଚିଲାକୁ ଚକ ଚିଲା

ଲେଖକ :
ଡକ୍ଟର କୁଳମଣି ସାମଲ

ପ୍ରକାଶକ :
ଜେ. ମହାପାତ୍ର ଏଣ୍ଡ କୋ.
ଛାତ୍ରସାଥୀ ଅଫିସ
ନମଚଉଡ଼, କଟକ-୨

ମୂଲ୍ୟ-- ଟ ୧୫-୦୦

# ଅଖ ଢିଲାକୁ ଚକ ଢିଲା

ଲେଖକ :
ଡକ୍ଟର କୁଳମଣି ସାମଲ

ପ୍ରକାଶକ :
ମେ. ମହାପାତ୍ର ଏଣ୍ଡ କୋ.
ନିମଚଉଡ଼ି, କଟକ-୨

ବ୍ଲକ :
ପ୍ରସେସ୍ ଆଣ୍ଡ ଅଫ୍‌ସେଟ୍ କୋ.
ବୁଢ଼ାଶାଚୌକ, କଟକ-୨

ମୁଦ୍ରଣ :
ଛୁବସାଥୀ ପ୍ରେସ
କାଳୀଗଳି, କଟକ-୨




## ବାଉଁଶଗଡ଼ ସହରରେ

ଆଜ ମାଟିବନ୍ଧ ଅବଧାନେ ନାହାନ୍ତି । ତାଙ୍କ ବେତର ଦୌରାତ୍ମ୍ୟ ନାହିଁ କି ତାଳପତ୍ରର ମାହାତ୍ମ୍ୟ ନାହିଁ । ଗାଁ ସଫେଇରେ ବେତଗଛ ଗାଁଗଣ୍ଡାରୁ ସଫା ହୋଇଗଲାଣି । କେବଳ ଚୌକିବୁଣା ପାଇଁ ମାନ୍ଦ୍ରାଜଆଡ଼ୁ ବେତ ରପ୍ତାନି ହେଉଛି । କାଗଜ ତ ବଜାରରେ ହାଉଜାଉ—ତାଳପତ୍ରକୁ ପଚାରେ କିଏ ? ତାଳଗଛଗୁଡ଼ିକ ବର୍ତ୍ତମାନ ତାଳଗୁଡ଼ ହମିତଙ୍କ ଯତ୍ନରେ ବଢ଼ୁଛନ୍ତି । ଦାଣ୍ଡପିଣ୍ଡା ଓ ବରଗଛମୂଳ ଚାଟଶାଳୀ, ବ୍ଲକ ଅଫିସ ସାମନାକୁ ଉଠିଆସିଲାଣି । ଦେଶ ଆଗେଇଛି । ସମୟର ମୂଲ୍ୟ ଆମେ ବୁଝିଲୁଣି । ସେଥିପାଇଁ ଗାଁ ଗୋହିରୀରେ ଆମେ ଆଉ ପାଦରେ ନ ଚାଲି ରିକ୍ସା ଚଢ଼ିଲୁଣି ! ଏପରିକି ସ୍ଥାନେ ସ୍ଥାନେ ସରକାରୀ ବସ୍ ଆସନ୍ତି ଗଲେ ବି ଗାଁ ଦେହପିଣ୍ଡ ଦୁଲୁକୁଛି ।

ହେଲେ ଆମ ଶଗଡ଼ଗାଡ଼ି ସେମିତି ଗଡ଼ିଚାଲିଛି । ବସ୍ ଯେମିତି ଗାଁ ଦାଣ୍ଡକୁ ମାଡ଼ିଗଲା, ଶଗଡ଼ ସେମିତି ବଜାରରେ ଆସି ହାଜର । ବକ୍ସିବଜାର, ଚୌଧୁରୀବଜାର, ନୟାସଡ଼କ ଓ ମହତାବରୋଡ଼ ସବୁଆଡ଼େ ସେ ଗଡ଼ୁଛି । ତା ଅଖ ଡିଲା ଓ ଚକ ବି ଡିଲା । ତଥାପି କେଁ କଟର ତାଳରେ ସେ ଚାଲିଛି । ପଛରେ ମନ୍ତ୍ରୀଙ୍କ ଗାଡ଼ି ପିଁ ପିଁ ଡାକିଲାଣି, ଉଚ୍ଚା ଉଚ୍ଚା ମାନ୍ଦ୍ରାଜ ମାଲବୁହା ଟ୍ରକ୍ ଉପରେ ଡ୍ରାଇଭର ବାବୁ ନଣ ସାଉଁକେଇଲେଣି । ତଥାପି ତା'ର ବଳଦ ହଳକ ହଲାହଲା ପାକୁଳି କରି ଚାଲିଛନ୍ତି । ଗତି ତା'ର ମନ୍ଥର । ଦ୍ରୁତଗାମୀ ଯାନ ସହିତ ସମକକ୍ଷ ହେବାକୁ ହେଲେ ମୁହୂର୍ତ୍ତେ ନ ଅଟକି ସବୁବେଳେ ଗଡ଼ିବାକୁ ହେବ । ସେଥିପାଇଁ ଯାହା ହେଲେ ବି ବେପରୁଆ ଭାବେ ତା ଚକ ଗଡ଼ୁଛି ଓ ଗଡ଼ୁଥିବ ।

ଶଗଡ଼ିଆ ମୁଣ୍ଡରେ ଠେକା, ହାତରେ ପାଞ୍ଚଣ ଓ ମୁହଁରେ ଛତିଆ ହାଡ଼ ଦାସଙ୍କ ମାଳକା—"ବେଳବୁଡ଼ ଯାଏ ବଳଦ ଯୋଚ କରିବେ ଚାଷ, ବୀଜ ନ ମିଳିବ ଜମିରୁ ହାନି ହୋଇବ ଶସ୍ୟ ।" କାହିଁକି ଏମିତି ସେ ଗାଏ ? କ୍ୟାପିଟେଲ ସିନେମା ଆଗରେ ଯେଉଁଠି ଲଟାମଙ୍ଗେଷକର କମ୍ପା ମହମ୍ମଦ ରଫିଙ୍କର ହିନ୍ଦୀଗୀତ ଗର୍ଜୁଛି, କଲେଜ ଛକରେ ଯେଉଁଠି ନୂଆ ଝେଲୁଥିବା ହିନ୍ଦୀ ସିନେମା ଛବି ମରୁଛି (ତଳକୁ ମୁହଁପୋତି ଗଲେ ବି ଛବିଗୁଡ଼ିକ ନ ଦେଖି ଉପାୟ ନାହିଁ) ସେଇଠି ସେ ଗୋଟାଏ ମଫସଲି କମାରର ଓଡ଼ିଆ ଗୀତ ଗାଇଲା କାହିଁକି ? କାରଣ ସେ ଯାହା ଭାବୁଥିଲା ତାହା କହୁଥିଲା ; ଯାହା କହୁଥିଲା ତାହା କରୁଥିଲା ; କିନ୍ତୁ ଆମ ଦର୍ଶନ ଭିନ୍ନ । ଆମେ ଯାହା କରୁଛୁ ତାହା କହୁନାହୁଁ । ଯାହା କହୁଛୁ ତାର ଓଲଟା ଭାବୁଛୁ ।

## ସନିଆ ସନାତନ ହେଲା

ସତରେ ଆଜ ଆମେ ପ୍ରଗତି କଥା କହି କଣ କଲୁ ? ଓହ୍ଲେଇବାର ଉପାୟ ନ କରେଇ ଲୋକଙ୍କୁ ଗଛ ଚଢ଼େଇଲୁ । ସହରରୁ ମଫସଲକୁ ରାସ୍ତା ଲମ୍ବେଇଦେଲୁ । ସହରର ଫେରିବାଲା ଯାଇଁ ମଫସଲରେ ମନୋହାରୀ ଜିନିଷ ବିକିଲା । ମଫସଲର ମାଇପେ ଆସି ସହରରେ ସିନେମା ଦେଖିଲେ । ସହରି ନେତାଏ ଯାଇଁ ମଫସଲି ସଭାରେ ଉତ୍ପାଦନ ଉପରେ ବକ୍ତୃତା ଝାଡ଼ିଲେ ; କିନ୍ତୁ ମଫସଲର ସନେଇ ସେଠି ମଦନ ମଳିକ ଓ ରାମ ରାହୁଳ ଗାଁ ଛାଡ଼ି ଆସିଲେ ସହରକୁ । ସହରର ଶସ୍ତା ବ୍ୟକିରି ତାଙ୍କୁ ହାତଠାରି ଡାକିଲା । ଆସିବାକୁ ଅସୁବିଧା ନାହିଁ । ସରକାରୀ ବସ୍ ତାଙ୍କୁ ବୋହି ଆଣିଲା । ଯୋଜନା'ର ବଡ଼ପଣ୍ଡା କଣ୍ଟ୍ରାକ୍ଟର ବାବୁଙ୍କ କୋଠା ଉଠୁଛି । ମୁଖ୍ୟ ଇଞ୍ଜିନିୟର ନକ୍ସା କାଟିଛନ୍ତି । ରାତି ରାତି ତାହା ଉଠିବ, ତେଣୁ ଗୌଣିଏ ଧାନପାଇଁ ସାରାଦିନ ପଙ୍କରେ ନ ଲେଟି ୫ ଗୌଣୀ ଧାନର ମଜୁରି ସେ ପାଇଲା ।

ବର୍ତ୍ତମାନ ସକାଳ ତୋରାଣି ବଦଳରେ ସେ ଚା' ପିଇଲା । ମଫସଲର ସନିଆ ସହରର ସନାତନ ହେଲା । ସେ ତ ଖୁସି ହେଲା, ନେତାଏ ବି ଭାବନା କଲେନି ।

## ତୋରାଣିରୁ ଚା

ଏଥିରେ ପୁଣି ଭାବିବାର କଣ ଅଛି ? ସହରର ବଣବୁଦା ସଫାହେଲା । ଗୁଣ୍ଠ ଶଏ ଥିଲା, ହଜାରେ ହେଲା । ତୋରାଣିରୁ ଚା'କୁ ଆସି ସନାତନ ବାବୁ

ଜୀବନଯାପନର ମାନଦଣ୍ଡ ବଢ଼ାଇଦେଲେ । ମାଟିଘରେ ନୋକଥ ଡାଳି ନ ଲୁଚି ପକ୍କାଘରେ ହରଡ ଡାଲି ହାପୁଡ଼ିଲେ । ନଈ ପୋଖରୀରେ ମଛ ନ ଅଣ୍ଡାଳି କଲେ ଦରରେ ମାଛ ତଉଲି ନେଲେ । ତାଙ୍କ ଧାରଣା ହେଉଥିବ ଉତ୍ପାଦନର ଉପାୟ ନ କରି ଆମେ ଜୀବନର ମାନ ବଢ଼େଇ ଦେଲୁ । ପରଧନ ଲୁଟି ଟେରିଲିନ ପିନ୍ଧିଲୁ ।

## ଉତ୍ପାଦନ ଯୋଜନା

ନା ତାହା ଆଦୌ ଠିକ୍ ନୁହେଁ । ଉତ୍ପାଦନ ଅଡ଼େ ଆମ ନଜର ବରାବର ରହିଛି । ଯୋଜନାରେ ତାକୁ ଉପଯୁକ୍ତ ସ୍ଥାନ ଦେଇଛୁ । ପ୍ରତି ପଞ୍ଚାୟତରେ ଗ୍ରେନ୍‌ଗୋଲା ଖୋଲିଲୁ । ତାଲିମପ୍ରାପ୍ତ ଗ୍ରାମସେବକଙ୍କ ଜରିଆରେ ଉପଯୁକ୍ତ ସାର ଓ ଯାବତୀୟ ପୋକମରା ଔଷଧ ବାଣ୍ଟିଲୁ । କୃଷି ପଣ୍ଡିତଙ୍କୁ କଲେକ୍ଟର ସାହେବ ବାରମ୍ବାର ଦର୍ଶନ ଦେଇ ଉତ୍ସାହିତ କଲେ । ଏପରି କି ତାଇଚୁଙ୍ଗ ଧାନ ଜରିଆରେ ଧାନକେଣ୍ଡା ଧରି ଆଳୁ ବସ୍ତାକୁ ଆଉଜି ଫଟୋ ଉଠେଇଲେ । ଆଗ୍ରହ ଓ ଉତ୍ସାହ ବଢ଼ାଇବା ପାଇଁ ଖବରକାଗଜ ପଚ୍ଛପଟେ ତାହା ଛପା ହେଲା । ତାଙ୍କ ଫଟୋରୁ କିଏ ଚିହ୍ନି ନ ପାରିବ (ଯାନ୍ତ୍ରିକ ଦୋଷତ୍ରୁଟି ଥିଲେ) ସେଥିପାଇଁ ତଳେ ଲେଖି ଚିହ୍ନାଇ ଦିଆଗଲା ।

ତଥାପି ତୁ ବୋକାମି ଧର୍ମଘଟ କଲେ ଚଳେ ନାହିଁ । କଲେଜ ପିଲେ ଷ୍ଟ୍ରାଇକ୍ କଲେ ମେସ୍‌ରେ ମ୍ୟାନେଜର ଖାଇଗଲା । ବଖତକୁ ଷାଠିଏ ପଇସା ହେଲେ ବି ତାଙ୍କୁ ପେଜ ଟପିଗଲାଣି । ଘରେ ଘରଣୀଙ୍କ ଚିତ୍କାର, ସୋରିଷ ତେଲରେ ଯାହା ମିଶିଲେ ବି ଦର ଖସୁନାହିଁ । ତଥାକଥିତ ସନାତନ ବାବୁ ମହଙ୍ଗାଭତ୍ତାର ପୁନର୍ବିଚାର ପାଇଁ ଘେରାଓ ଆନ୍ଦୋଳନରେ ମାତିଛନ୍ତି । —ପରାଧୀନ ଥିଲାବେଳେ ଆମେ ରାମରାଜ୍ୟର ସ୍ୱପ୍ନ ଦେଖୁଥିଲୁ । ଯୋଜନାରେ ଛନ୍ଦର ହୋଇ ଆମେ ଉଚକାଟ ପାଲଟିଲୁ । ପରାଧୀନ ବାଜି ରାଉତ ସଙ୍ଗୀନ ମୁନକୁ ଛାତି ଦେଖାଇଲା, ସ୍ୱାଧୀନତାର ସ୍ୱପ୍ନ ଦେଖି ଭଗତ ସିଂ ହସି ହସି ଫାଶୀଖୁଣ୍ଟରେ ଝୁଲିଲା; କିନ୍ତୁ ସ୍ୱାଧୀନ ହୋଇ ଆମେ ସର୍ବସାଧାରଣଙ୍କର ସର୍ବସ୍ୱ ଲୁଣ୍ଠିନେଲୁ । । କିଏ କହୁ ପାରୁନ୍ତ ଦେଶରେ ଅଭାବ ହେଲା । ଅଭାବେ ସ୍ୱଭାବ ନଷ୍ଟ । ନଷ୍ଟସ୍ୟ କାନ୍ୟା ଗତିଃ । ଆଗେ ଅଭାବ ନା ଆଗେ ସ୍ୱଭାବନଷ୍ଟ । କେଉଁଟା ଆଗେ ?

## ତାଜାଖବର

ଆମେ ତ ଲୋକଙ୍କୁ ସବୁଥିରେ ତାଗିଦ କରନ୍ତୁ । ଯେଉଁ ଟଙ୍କା ସର୍ବସାଧାରଣ ରାସ୍ତା ବା ନାଳ ଖୋଳା ପାଇଁ ଆସିଛୁ ସେଥିରେ ନିଜ କୋଠା ଉଠାଇନା । ପାଦ୍ୟ କଣ୍ଟ୍ରୋଲରେ ବର୍ଣ୍ଣିହେବ ତାକୁ ଖୋଲା ବଜାରରେ ବିକନା । ଶ୍ରେଷ୍ଠ ପରିବାର ସୁଖୀ ପରିବାର । ବସ୍, ରାସ୍ତାଚଳକ, ଏପରି କି କଲେଜ କାନ୍ଥ ଓ ହଆସିଲ ଖୋଳ ସବୁଆଡ଼େ ବିଜ୍ଞାପନ ଦେଲୁ । ଲୋକେ ମାନିଲେ ନାହିଁ । ଦୁର୍ଯୋଗକୁ ପ୍ରକୃତିର ନେଲା ଅବୈଧ । ସମାଗତ ଆସିଲା ଯୁଦ୍ଧ, ବର୍ଷାଭାବ, ବନ୍ୟା, ଭୂମିକମ୍ପ ଓ ଘୂର୍ଣ୍ଣିବାତ୍ୟା । ଦୁଃଖ ଆସିଲେ ସାଙ୍ଗସାଥୀ ଧରିଆସେ । ଜନତା ମାତିଲା , ଛାତ୍ର ବିକ୍ଷୋଭ କଲେ । ପୁଲିସ ଲାଠି ଚଳାଇଲେ । ସବୁଦିନେ ଖବରକାଗଜରେ ଖାଲି ତାଜା ଖବର । ଦେଶ ଖାଲି ପଡ଼ିଲା ଉଠିଲା । ହାଡ଼ ଦାସଙ୍କ ଅନୁମାନ ଠିକ୍ ହେଲା । ଲୋକେ ବେଳବୁଡ଼ ଯାଏ ବଳଦ ଯୋଚି ଚାଷ କଲେ ଅଥଚ ଜମିରୁ ଅଧିକ ମିଳିଲା ନାହିଁ । ମନୁଷ୍ୟ ନିଃସ୍ୱ ଓ ନିଃସହାୟ ହୋଇ ପଡ଼ିଲେ । ପ୍ରକୃତିର ଅବୈଧ ତାକୁ ବେଶୀ ବାଧେ । ମନୁଷ୍ୟର ମନୋବଳ ଦୃଢ଼ ରହିଲେ ପ୍ରକୃତି ପରାସ୍ତ ହୁଏ । ପ୍ରକୃତି ତ କେବଳ ଭାରତ ଉପରେ ଅବୈଧ କରୁନାହିଁ, ଅନ୍ୟ ଦେଶମାନେ ମଧ୍ୟ ପ୍ରକୃତିବିଧ୍ୱସ୍ତ ।

## ପାଉଁଶ ତଳୁ ଜାପାନ

ଜାପାନ ଆଡ଼େ ଆଖି ଫେରାନ୍ତୁ । ଓଡ଼ିଶା ପରି ଆକାରରେ । ଚାରିଆଡ଼େ ତାକୁ ସମୁଦ୍ର ଘେରିଛି । ଆମରି ପରି ଜାପାନୀମାନେ ଭାତ ମାଛ ଖାଆନ୍ତି । ଗେଡ଼ା ଗେଡ଼ା ମଣିଷ । ତାଙ୍କ ଦେଶରେ ସବୁବର୍ଷ ଭୂମିକମ୍ପ ଓ ଝଡ଼ତୋଫାନ ଲାଗିଥାଏ । ଜାପାନ ଜାତି ସବୁ ସମ୍ଭାଳିଛି । ପ୍ରକୃତି ସଙ୍ଗେ ଲଢ଼ିବାକୁ ଯେପରି ସେ ସବୁବେଳେ ପ୍ରସ୍ତୁତ । ଗତ ମହାଯୁଦ୍ଧରେ ସାରା ପୃଥିବୀକୁ ସେ ଚମକାଇ ଦେଲା । ଦି'ଟା ଆଣବିକ ବୋମା ତା ଉପରେ ଫୁଟିଲା । ମାଆ ଆଗରେ ଛଟପଟ ହୋଇ ଛୁଆ ପୁଅ ମାଟିରେ ଲୋଟିଲା । ଦେଶର ମେରୁଦଣ୍ଡ ଭାଙ୍ଗିଗଲା । ସେହି ଆଣବିକ ପାଉଁଶ ତଳୁ ପୁଣି ସେ ଜାତି ମୁଣ୍ଡ ଟେକିଲା । ତାର ଡାଇରି, ଖେଳଣା, ଚପଲ, କ୍ୟାମେରା, ଟ୍ରାନ୍‌ଜିଷ୍ଟର, ଘଣ୍ଟା ଆଜି ପୃଥିବୀର ଆମେରିକା ବଜାରରେ ଭରି । ତା'ର ଜାହାଜ ଆସି ଆମ ପାରାଦୀପରୁ ଲୁହା ପଥର ବୋହି ନେଉଛି । ସେ ଆମକୁ ସୁନ୍ଦର, ଶସ୍ତା ଓ ମଜବୁତ୍ ଘଣ୍ଟା ତିଆରି ଶିଖାଉଛି । ଜାତିର ଜାଗ୍ରତ ଥିଲେ ତାକୁ ସଜାଡ଼ିବାକୁ ବେଶୀ ବେଳ

ଲାଗେ ନାହିଁ । ସେହି ଜାଗ୍ରତତା ବଳରେ ଜାପାନ ଆଜିଥରେ ଅନ୍ୟମାନଙ୍କ ସଙ୍ଗେ କାନ୍ଧ ଡ଼େରି ଓ ମୁଣ୍ଡ ଟେକ ଠିଆହେଲା ।

ତାହାହେଲେ ଆମେ କଣ କରିବା ? ଉତ୍ପାଦନକୁ କେବଳ 'ଅଗ୍ରାଧିକାର ଦଅ, ଅଗ୍ରାଧିକାର ଦଅ' ବୋଲି ଚିତ୍କାର କଲେ ସବୁ ସମସ୍ୟା ତୁଟିଯିବ ନାହିଁ ।

ପ୍ରାଥମିକ ସ୍କୁଲ ସିଲାବସ୍‌ରେ ଗୁଡ଼ାଏ ଗଛ ଫୁଲ ବା ଫଳ ଗୁନ୍ଥା ହେଲେ ଏ ଜାତି କୋଡ଼ି କୋଦାଳ ଧରିବାକୁ ଆଗ୍ରହୀ ହେବ ନାହିଁ । କୃଷି ଅଫିସରଙ୍କୁ ମୋଟା ଦରମା ବା ବସ୍ତ୍ରଖର୍ଚ୍ଚା ଦେଇ ଗାଁ ଗଣ୍ଡାକୁ ପଠାଇଲେ କୃଷି ପଣ୍ଡିତ-ମାନେ ଆଉ କିଛି ଅଧିକା ପାଣ୍ଡିତ୍ୟ ହାସଲ କରିବେ ନାହିଁ ।

ଛଟେଇ

ଏ ହେଲା ସାମାନ୍ୟ କେତୋଟି ପ୍ରସ୍ତାବ । ସମସ୍ତଙ୍କ ମନକୁ ପାଇବ ନାହିଁ, ତଥାପି ଏ ବିଷୟରେ ସମସ୍ତେ ଟିକିଏ ଭାବନ୍ତୁ ବୋଲି ମୋର ଅନୁରୋଧ । ପ୍ରଥମଟି ହେଲା ପିଅନ ଛଟେଇ । ଆମେରିକାରେ ପିଅନ ନାହାନ୍ତି । ସେକ୍ରେଟେରୀ ନିଜେ ନିଜ ଫାଇଲ ବୁହନ୍ତି । ତେଣୁ ସେ ଫାଇଲ ମୋଟା ହୁଏନା । ଫୋନରେ ଅଧିକାଂଶ କାମ ଚଳେ । ଅଯଥା ଲେଖା ଲେଖିରେ ସମୟ ନଷ୍ଟ ନ କରି ଚଞ୍ଚଳ କାମ କରେଇବାରେ ସେମାନେ ଅଭ୍ୟସ୍ତ । ଏଠି ଫାଇଲଗଦା ଆଢୁଆଳରେ ଆମେ ଅଫିସ ବଡ଼ବାବୁଙ୍କୁ ମଧ୍ୟ ଚିହ୍ନି ପାରୁନା । ଖାଲି ଫାଇଲ ଉପରେ ଗୁଡ଼ାଏ ଦସ୍ତଖତ ଗୋଟାଇବାକୁ ଅର୍ଦ୍ଦଳି ଓ ପିଅନ ବ୍ୟବସ୍ଥା କରୁ । ଅଣ ଉତ୍ପାଦନରେ ଉତ୍ପାଦକଙ୍କୁ ବ୍ୟସ୍ତ ରଖୁ । ଯେଉଁମାନେ ବିଲ ବାଡ଼ରେ କାମ କରନ୍ତେ, ବାଡ଼ ବଗିଚାରେ ଶାଗ ମେଣ୍ଟାଏ କିମ୍ବା ସାରୁ କଲେ ଫଳନ୍ତେ, ସେମାନେ ସକାଳୁ ଥଳି ଧରି ମାର୍କେଟକୁ ବାହାରନ୍ତି । ଯେଉଁମାନେ ଉପୁଜାନ୍ତେ ସେମାନଙ୍କୁ ଆମେ କିଣିଖିଆ କଲୁ । ମାସକୁ ଦି ଚାରି ଟଙ୍କା ମହଙ୍ଗାଭତ୍ତା ପାଇବାପାଇଁ ସେମାନେ ସରକାରଙ୍କ ସଙ୍ଗେ ଅସହ-ଯୋଗ କଲେ । ସେମାନଙ୍କପାଇଁ କେତେ ବେଳେ ସରକାରୀ କଳ ଅଚଳ ହୋଇପଡ଼ୁଛି । ଅନେକ କଲେଜରେ ପରୀକ୍ଷାଗାରରେ କେତେକ କର୍ମଚାରୀ ଅଛନ୍ତି, ସେମାନଙ୍କ କାମ କଣ ସେମାନେ ଏ ପର୍ଯ୍ୟନ୍ତ ଜାଣି ନାହାନ୍ତି । କିଣିଖିଆ ସଂଖ୍ୟା କମେଇବାକୁ ହେଲେ ଏମାନଙ୍କୁ ପୁଣି ଗାଁ ଗଣ୍ଡାକୁ ଫେରାଇ ନେବାକୁ ହେବ । ଅନ୍ୟ ଦେଶରେ କେତେ ଲୋକରେ ସରକାରୀ ଶାସନ

କେମିତି ଚାଲୁଛି ସେଥିପ୍ରତି ଧ୍ୟାନ ଦେବାକୁ ହେବ । ଅଣଉତ୍ପାଦନ କାମରେ ଗୁଡ଼ାଏ ଲୋକଙ୍କୁ ନିଯୁକ୍ତି ଦେବା ଉନ୍ନତିକାମୀ ଦେଶର ଲକ୍ଷ୍ୟ ହେବା ଉଚିତ ନୁହେଁ ।

## କୁଳ କୁଟୁମ୍ବକୁ ଲାଜ

କ୍ୟାନାଡ଼ାରେ ଆଲବର୍ଟ ବିଶ୍ୱବିଦ୍ୟାଳୟ ରେଜିଷ୍ଟ୍ରାର ମୋ ସଙ୍ଗରେ ପରୀକ୍ଷା ଖାତା ବାଣ୍ଟୁଥିଲେ । ଏଠି ପରୀକ୍ଷା ହଲରେ ଜଣେ ସିଲେଇ କରେ, ଜଣେ ପାଣି ଦିଏ, ଜଣେ ଖାତା ବାଣ୍ଟେ, କେତେଜଣ ଜଗନ୍ତି । ତଥାପି ଯାହା ହୁଏ ତାହା ସମସ୍ତଙ୍କୁ ଜଣା । ଫାଇଲରେ ଯାହା ଲେଖାଲେଖି ହୁଏ—ଯେଉଁ ବିସ୍ତାରବୃଦ୍ଧି ଘଟେଇବାକୁ ହୁଏ, ସେଥିପାଇଁ କଣ ବି. ଏ., ଏମ. ଏ. ଡିଗ୍ରୀଧାରୀ କର୍ମଚାରୀ ନିତାନ୍ତ ଦରକାର । କ୍ୟାନାଡ଼ାରେ ଏହି ଧରଣର ଅଧିକାଂଶ କାମ ମାଟ୍ରିକ୍ୟୁଲେସନ ପାସ୍ କରିଥିବା ଝିଅମାନେ ତୁଲାଇ ଦିଅନ୍ତି । ଏଗୁଡ଼ାକ ନ କହିବା ଭଲ, "କହିଲେ କୁଳକୁଟୁମ୍ବକୁ ଲାଜ, ନ କହିଲେ କୁଳ ଭାସି-ଯାଉଛି ।" ଅଫିସମାନଙ୍କରୁ ପାଞ୍ଚଟା ବେଳକୁ ଯେତେବେଳେ କୌରବ ସୈନ୍ୟବାହିନୀ ପରି ଲୋକ ବାହାରନ୍ତି ସେମାନେ କଣ ଖାନ୍ତି, ଜଣେ ଅର୍ଥ-ନୀତିର ଅଧ୍ୟାପକ ମଧ୍ୟ ଭାବିପାରିବେ ନାହିଁ । ଘରେ ସେମାନଙ୍କ ପିଲା କୁଟୁମ୍ବ ପୁଣି ସେମାନଙ୍କ ଦରମାକୁ ଅନେଇଛନ୍ତି ।

## ବୀର ହନୁମାନ

ଆମ ଦେଶର ପରିବାର ପ୍ରଥା ପୁଣି ଏ ଉତ୍ପାଦନର ପ୍ରତିବନ୍ଧକ । ମା ଘରେ ଚୁଲି ଫୁଙ୍କନ୍ତି, ବାପା ଅଫିସରେ ଫାଇଲ ଘାଣ୍ଟନ୍ତି । ଘରେ ପଲେ ପିଲାଝିଲା । ଦେଶକୁ ସୁଖୀ ପରିବାର ଯୋଜନା ଆସିବା ଆଗରୁ ସେମାନେ ଦୁଃଖୀ ହୋଇ ସାରିଥିଲେ ! ପୁଅ ଝିଅ ସ୍କୁଲ କଲେଜ ମାଡ଼ିଲେ, କୁଟା ଖଣ୍ଡିକ ଦିଖଣ୍ଡ କରନ୍ତି ନାହିଁ ; କିନ୍ତୁ ନେତା ହୋଇ କାଚ ଝରକା ଭାଙ୍ଗିବାକୁ ହେଲେ କିମ୍ବା ସରକାରୀ ବସ୍ ବା ରେଳଗାଡ଼ି ପୋଡ଼ିବାକୁ ହେଲେ ବାହୁରେ ତାଙ୍କର ବୀର ହନୁମାନ ବଳ ମାଡ଼ିଆସେ । ଯେହେତୁ ବାପ ମା ସେମାନଙ୍କୁ ଜନ୍ମ ଦେଇଛନ୍ତି, ସେମାନଙ୍କୁ ବାହା ସାହା କରି ସେମାନଙ୍କ ପୁଅ ଝିଅଙ୍କୁ ସ୍କୁଲ କଲେଜରେ ନାମ ଲେଖାଇବା ଦାୟିତ୍ୱ ମଧ୍ୟ ସେମାନଙ୍କର । ଏହି ଆମ ପରିବାର । ଦୁଇଟି ହାତକୁ ପଲେ ମୁହଁ ସବୁବେଳେ ଗୁହାରି କରିଥାନ୍ତି । ଆମେରିକା ବା କ୍ୟାନାଡ଼ାରେ ଯେଉଁଠି ଝିଅ ମଧ୍ୟ ଭାସୁଛି, ସେଠି ଝିଅ ମଧ୍ୟ

ମାଟ୍ରିକ୍ ପାସ୍ କଲାପରେ ମେସ୍‌ରେ ପରୀକ୍ଷାପରକ୍ଷି କରି ଅନ୍ୟର ପୁଅଝିଅଙ୍କୁ ଖୋଇଦେଇ ତାର କଲେଜ ଖର୍ଚ୍ଚ ତୁଲାଏ । ଆମ ଦେଶରେ ଥିଲାବାଲା ବାପ-ମାନେ ଶରଧାରେ ଆଇ. ଏ. ଏସ. ପୁଅଙ୍କୁ ମଧ୍ୟ ପକେଟ ଖର୍ଚ୍ଚ ଦିଅନ୍ତି ।

## ଉଚ୍ଚ ଶିକ୍ଷାର ଖିଆଲ

ଏ ଆଉ ଏକ ପ୍ରସ୍ତାବ । ଯେତିକି କଲେଜ ଅଛି ସେତିକି ଥାଉ । ଦେଶରେ ଖାଲି ବି.ଏ., ବି. ଏସସି., ଏମ. ଏ., ଏମ.ଏସସି, ପଢ଼ିଲେ ଦେଶର ଅଭାବ ଅସୁବିଧା ମେଣ୍ଟିବ ନାହିଁ । ଉଚ୍ଚ ଶିକ୍ଷାର କଟକଣା ହେଉ । ଅନ୍ତତଃ ଶତକଡ଼ା ୫୦ ବା ୬୦ କରି ପିଲାଙ୍କୁ (ଉପଯୁକ୍ତ ପରୀକ୍ଷାଦ୍ୱାରା) ଉଚ୍ଚଶିକ୍ଷା ପାଇଁ ସୁବିଧା ନ ଦିଆଯାଉ । ଅନୁନ୍ନତ ବା ଅଭାବଗ୍ରସ୍ତ ଦେଶରେ ବାପ ମା ଯଦି ସଉକରେ ପୁଅକୁ ଉଚ୍ଚ ଶିକ୍ଷିତ କରାଇବେ ଦେଶ ରସାତଳକୁ ଯିବ । ଯିଏ ଶହେରେ ୩୦ ରଖିଲା ତା ପାଇଁ ଯଦି ଆଞ୍ଚଳିକ ଭିତ୍ତିରେ ରାଜନୈତିକ ଚାପ ପାଇ ଆମେ ଉଚ୍ଚଶିକ୍ଷାର ବ୍ୟବସ୍ଥା କରିଦେବା ତାହା ହେଲେ ଆମ ମାନଦଣ୍ଡ ମାଟି ଖାଇଯିବ । ଗୋଟିଏ ଏମ. ଏସ. ସି ପିଲାପାଇଁ କେତେ ଖର୍ଚ୍ଚ ହୁଏ ତାହା ସରକାର ଜାଣନ୍ତି । ସେ ଯଦି ବାରମ୍ବାର ଚେଷ୍ଟାରେ ଯଥା ତଥା ୨ୟ ଶ୍ରେଣୀ ପାଇ ଉନ୍ନୀତ ହୁଅନ୍ତି, ସେ କଥା ଆମେ କାହାକୁ କହିବା । ଏମିତି ଉଚ୍ଚ ଶିକ୍ଷାକୁ ଗଣଶିକ୍ଷାରେ ପରିଣତ କଲେ ମେଧାବୀ ପିଲାଏ ପଛକୁ ଠେଲି ହେବେ । ଉତ୍ପାଦନ କାଣ୍ଟଛଣ୍ଟ ହେବ । ବେକାର ସମସ୍ୟା ଓ ରାଜକରରେ ପେଞ୍ଚପାଞ୍ଚ ବଢ଼ିବ । ଅନ୍ୟ ଦେଶର ପିଲାଏ ନଜେ ରୋଜଗାର କରି କଲେଜ ଦରମା ଦିଅନ୍ତି । ତେଣୁ ଉଚ୍ଚଶିକ୍ଷା ଆପେ ଆପେ ନିୟନ୍ତ୍ରିତ ହୁଏ । ଏ ଦେଶରେ ବାପ ମା'ଙ୍କ ଅର୍ଜ୍ଜନ ଓ ସରକାରୀ ବୃତ୍ତି ଅବାଞ୍ଛିତସ୍ଥାନଙ୍କୁ ମଧ୍ୟ ବେଶ୍ ଉତ୍ସାହିତ କରାଏ ।

## ଡାକ୍ତର ଅମଳ

ଉଚ୍ଚକୋଟୀର ଉତ୍ପାଦନପାଇଁ ଏ ଆଉ ଏକ ବ୍ୟବସ୍ଥା । ଅଭାବ ପଡ଼ିଥିଲା ବେଳେ ଦେଶରେ ଧାନ, ଚାଉଳ, ଆଳୁ, ବାଇଗଣ ବା କଳକବ୍‌ଜା ଉପୁଜେଇବା ଯେମିତି ଦରକାର, ଆଳୁ ବାଇଗଣ ଫଳେଇଲା ପରି ଇଞ୍ଜିନିୟର ଡାକ୍ତର, ଶିକ୍ଷକ ବା ଅଧ୍ୟାପକ ଜନ୍ମେଇବା ସେମିତି ଦରକାର ନୁହେଁ । ସେମାନେ ଦେଶର ଧନ ଜୀବନ ଓ ସଂସ୍କୃତି ସହିତ ସଂପର୍କ ରଖନ୍ତି । ଚାଷୀ ଅମଳ କରୁଥିବା ଯେ କୌଣସି ଶସ୍ୟରୁ ବିହନ ରଖେନା । ସେଥିପାଇଁ ତାକୁ

ସତର୍କ ହୋଇ ବସ୍ତୁବସ୍ତୁ କରିବାକୁ ପଡ଼େ । ସେଥିପାଇଁ ଖାଲି ମୁଣ୍ଡ ଗଣତି କରି ପରିସଂଖ୍ୟାନ ଠିକଣା କଲେ କେବଳ ଆତ୍ମସନ୍ତୋଷ ମିଳିବ । ଗଳକଣ୍ଢରେ ରୋଗସଂଖ୍ୟା ଡାକ୍ତରଙ୍କୁ ଚିପିଦିବ । ଛାତ୍ରମାନେ ଆଉ ଶିକ୍ଷାର୍ଥୀ ନ ବୋଲେଇ ଛନ୍ଦରେ ପଶିବେ । ହଁ ଡାକ୍ତର, ଶିକ୍ଷକ ବା ଅଧ୍ୟାପକମାନଙ୍କୁ ଯେତେ ବଛା, ବଛି କରି ନେଲେ ସେମାନଙ୍କ ଆଡ଼େ ଯଦି ସୁଦୃଷ୍ଟି ନ ଦିଆଯାଏ ତାହା ହେଲେ ଆମେ ମହର୍ଘରୁ ଯାଇ କାନ୍ତାରରେ ପଡ଼ିବା । ସେମାନେ ଯଦି ସକାଳୁ ସଞ୍ଜ-ଯାଏ ଖାଲି ଭଡାଘର, ଅଟା, ଚିନି ଓ ସୋରିଷତେଲ ଯୋଗାଡ଼ କରିବେ ତାହା ହେଲେ ଆମର ସମସ୍ତ ବ୍ୟବସ୍ଥା ବ୍ୟର୍ଥ ହୋଇଯିବ ।

## ନଗର ନା ବସ୍ତି

ଏ ସମସ୍ତ ବ୍ୟବସ୍ଥାକୁ ଚାଲୁ ରଖିବାପାଇଁ ସରକାରଙ୍କ ସହିତ ଏକ ବେସରକାରୀ ସମିତି ହାତ ମିଳାଇବା ଦରକାର । ବାସ୍ତବ କ୍ଷେତ୍ରକୁ ଓହ୍ଲାଇ ଯଦି ଆମେ ବିଚାର ନ କରିବା ଉତ୍ପାଦନ କେବଳ ଆଲୋଚନାରେ ହିଁ ଶେଷ ହେବ । ଦେଶରେ କାଣିଚୁଏ ଜମିରେ ଉତ୍ପାଦନ ନକରି ଦେଶପାଇଁ ଟିକିଏ ହେଲେ କିଛି କାମ ନ କରି ଛଅ ଶହ ଲୋକ ସେମାନଙ୍କ ଗୁଜୁରାଣ ମେଣ୍ଟାଉଛନ୍ତି । ସେମାନଙ୍କ ପ୍ରତି ସରକାର ସତର୍କ ହେବା ଉଚିତ । ଚାଷୀ ଆଳୁପାଇଁ ଯେତେ ନ ନିଏ ବେପାରୀ ଖାଲି ତାକୁ ଏଠୁ ସେଠିକି ଥୋଇ, ଶୀତଳ ଭଣ୍ଡାରରେ ସାଇତି ରଖି ତାର ପାଞ୍ଚଗୁଣ ନିଏ । ସେ ସବୁ ପଇସା ଆମେ ଦେଉ ଓ ସେ ପୁଞ୍ଜି ଜ୍ୟାମିତିକ ହାରରେ ବଢ଼େ । ଆଜି କଟକ ସହରରେ ବାବୁଭାୟାଙ୍କୁ ରିକ୍ସାରେ ବୋହିବାପାଇଁ ଯେତେ କନିକିଆ ଅଛନ୍ତି ନଗର-ପାଳିକା ସମିତି ତା ପ୍ରତି ନଜର ନ ଦେଲେ କଟକ ଆଉ ନଗର ହୋଇ ରହିବ ନାହିଁ । ତାହା କେବଳ ରିକ୍ସାବାଲାଙ୍କ ଅସ୍ୱାସ୍ଥ୍ୟକର ବସ୍ତିରେ ପରିଣତ ହେବ । ଦେଶରେ ଅଭାବ ହେଲା ବୋଲି ଆମେ ଯଦି ଡାକ୍ତର, ଇଞ୍ଜିନିୟର, ଅଧ୍ୟାପକ, ଛାତ୍ର ସମସ୍ତଙ୍କୁ ସେମାନଙ୍କ କର୍ତ୍ତବ୍ୟ ଭୁଲି ଖାଲି ଲଙ୍ଗଳ ଧରିବାକୁ ପରାମର୍ଶ ଦେବା ତାହା ହେଲେ ଦେଶ ଧୂଳିସାତ୍ ହୋଇଯିବ । କିଏ ଦରକାରୀ କିଏ ଅଦରକାରୀ, କଣ ଦରକାର ଓ କେତେବେଳେ ଦରକାର ଏସବୁ ବିଚାର ନ କଲେ ଆମ ଉତ୍ପାଦନ ଯୋଜନା ଭୁଷୁଡ଼ି ପଡ଼ିବ । ଛତିଆ ଗାଁର କମାର ଯାହା ଦିନେ ଅନୁମାନ କରିଥିଲା ତାକୁ ଆମ ଯୋଜନା ଅଟକାଇ ପାରିବ ନାହିଁ । ଯଦି ଅଖ ଢିଲାକୁ ଚକ ଢିଲା ହୁଏ ତାହାହେଲେ ଶଗଡ଼ ଯେତେ ନ ଗଡ଼ିବ ତାଠାରୁ ଅଧିକ ଶବ୍ଦ କରିବ ।

## ନୂଆ ଔଷଧ

ନୂଆ ଔଷଧ କହିଲେ କେହି ଷ୍ଟେସନ ବଜାରର ଔଷଧକୁ ବୁଝିବେ ନାହିଁ । କାରଣ ସେଗୁଡ଼ିକ ନୂଆ ନୁହେଁ । ଷ୍ଟେସନରେ ଗାଡ଼ି ପହଞ୍ଚିଲେ ପ୍ଲାଟଫର୍ମ ବାହାରେ ଜଣେ ପାଟି କରୁଥାଏ "ଯାଦୁମଲମ, କାଳୁ ମଲମ, ମଠଳା, ଚମତଳା, କଟା ଘା, ପୋଡ଼ା ଘା, ଛଳୁଣିମାଶ୍ଚି ଚୂର୍ଣ୍ଣ ଇତ୍ୟାଦି ଇତ୍ୟାଦି" । ଏକା ନିଃଶ୍ୱାସକେ ସେ କହି ଚାଲିଥାଏ । ତା ହାତରେ ଖଣ୍ଡିଏ ଫ୍ଲେଟ ପୁରୁଣା ସୁଟ୍‌କେଶ । ଆଜିକି ପ୍ରାୟ ୨୦ ବର୍ଷ ହେଲା ସେ ସେମିତି ଚିତ୍କାର କରୁଛି । ଷ୍ଟେସନକୁ ଗାଡ଼ି ଆସିଲେ, ବସ୍ ଅଟକିଲେ କିମ୍ବା ସାଇକେଲ ଷ୍ଟେର ବା ପକେଟ ମାରୁକୁ ମାଡ଼ ଦେବାପାଇଁ ଲୋକ ଜମିଲେ ସେ ସୁଯୋଗ ପାଇ ଚିତ୍କାର ଆରମ୍ଭ କରିଦିଏ । ତାର ଯୌବନରୁ ସେ ଏ ବ୍ୟବସାୟ ଆରମ୍ଭ କରିଥିଲା । ବର୍ତ୍ତମାନ ବାର୍ଦ୍ଧକ୍ୟରେ ଆସି ପାଦ ଦେଲାଣି । ଏହି ଦାନ୍ତ ପୋକକଟା ଔଷଧ ବିକି ବିକି ଆଜ ସବୁ ଦାନ୍ତ ସେ ହରାଇ ବସିଲାଣି ।

## ଡାକ୍ତରଙ୍କ ପ୍ରତିଦ୍ୱନ୍ଦ୍ୱୀ

ଏ ବ୍ୟବସାୟରେ ତାର ଆର୍ଥିକ ସ୍ୱଚ୍ଛଳତା ଆସିଛି ବୋଲି ଠିକ୍ କହି ହେବନି । କାରଣ ସେ ଏବେ ବି ସେମିତି ସୁଟ୍‌କେଶ ଧରି ରାସ୍ତାକଡ଼ରେ ବୁଲେ । ଯଦି ସେମିତି କିଛି ତାର ଆର୍ଥିକ ଉନ୍ନତି ହୋଇଥାନ୍ତା ଅନ୍ତତଃ ସେ ନଗରପାଳିକା ସମିତି ଅନୁକୂଲ୍ୟରୁ ରାସ୍ତାକଡ଼ରେ କାଠକ୍ୟାବିନଟିଏ ପକାଇଥାନ୍ତା । ତେବେ ଏହା ସତକଥା ଯେ ତାହା ବ୍ୟବସାୟଟା ନିତାନ୍ତ ମାନ୍ଦା ନୁହେଁ । ଏବେ ବି ଏ ଦେଶର ମା' ଭଉଣୀଙ୍କ ମୁଣ୍ଡରେ ଉକୁଣି ବସା ବାନ୍ଧିଛନ୍ତି । କାରଣ ଯେଉଁନ ଚର୍ମରୋଗବିଶାରଦ ଡାକ୍ତର ବନ୍ଧୁ କହୁଥିଲେ ସେହି ସୁଟ୍‌କେଶଧାରୀ ଏବେ ବି ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ।

ବଡ଼ଡାକ୍ତରଖାନାକୁ ଆସୁ ଆସୁ ଚର୍ମରୋଗୀମାନେ ଏହାର ଚିତ୍କାର ଶୁଣି ଅଟକି ଯାନ୍ତି, "ମାତ୍ର ଚାରି ଅଣା ବା ମାତ୍ର ଆଠ ଅଣାର" ଲୋଭ ସେମାନେ ଏଡ଼ିପାରନ୍ତି ନାହିଁ । ଖବରକାଗଜରେ ଅବଶ୍ୟ ଏହି ସୁଟ୍‌କେଶଧାରୀଙ୍କ ଧନ୍ୱନ୍ତରୀ କରାମତି ପ୍ରକାଶ ପାଇ ନ ଥାଏ ; କିନ୍ତୁ ତାଙ୍କ ପାଖରେ ଜଣେ ଭଦ୍ରଲୋକ ଠିଆହୋଇ କହୁଥାନ୍ତି 'ଦେଖନ୍ତୁ ତ ବାବୁ ସେହି ଅଦ୍ଭୁତ ଯାଦୁ

ମଲମ, ଆଶ୍ଚର୍ଯ୍ୟ ତାର ଗୁଣ । ଗୋଟିଏ ଡବା ନେଇଥିଲେ ସେ ଗାଁରେ ଲୋକେ ତାକୁ ଧନ୍ୟଧନ୍ୟ ହେଲେ ।" ସଙ୍ଗେ ସଙ୍ଗେ ଅନେକ ହାତ ଲମ୍ବିଯାଏ । କାରଣ ପ୍ରମାଣ ଆଖି ଆଗରେ । ସରଳ ନିରୀହ ମଫସଲ ଭାଇ ଏ ବିଶ୍ୱାସ କରିବାକୁ ବାଧ୍ୟ । ଏମିତି [illegible] ଲେ ସେ ବ୍ୟବସାୟୀ । କଣାଳ ଡାକ୍ତରଙ୍କ ଫି ୧୬ ଟଙ୍କା ଦେଇମାନର [illegible] କି ଏଣେ ଯାଦୁର ପ୍ରକୋପ ସହ୍ୟ କରି ପା[illegible] । [illegible] ଦରିଦ୍ର ଓ ଅଭାବଗ୍ରସ୍ତ ଘରେ ତାର ପିଲାଛୁଆ । ତରକାରି ନ ହେଲେ ନାହିଁ, ଅନ୍ତତଃ ଦିଓଳି ଦିମୁଠା ଭାତ ସେମାନେ ଖାଆନ୍ତୁ । ବିକାଳିର ଠିକ ସେହି ଅବସ୍ଥା, ୨୦ବର୍ଷର ରଙ୍ଗହୀନ ଟିଣ ସୁଟ୍କେଶଟିଏ ତା'ର ଭରସା । ପିଲାଛୁଆଙ୍କୁ ଦିଓଳି ଦିମୁଠା ଭାତ ଦେବାପାଇଁ ସେ ତାକୁ ଏତେ ଯତ୍ନରେ ସାଇତି ରଖିଛି । ପ୍ରକୃତରେ ଉକୁଣିମାର ଅଭିଯାନ ତାର ଲକ୍ଷ୍ୟ ନୁହେଁ । ଦେଶରେ ଉକୁଣି ନିର୍ମୂଳ ହେଲେ କି ନାହିଁ ସେ ତାର ହିସାବ ରଖେନା । ଏହା ଭିତରେ ଯେ ସେ ଡାକ୍ତର ବାବୁଙ୍କ ପ୍ରତିଦ୍ୱନ୍ଦ୍ୱୀ ହେଲାଣି ସେ ଖବର ତାକୁ ମାଲୁମ ନାହିଁ । ତାର 'ମାନ୍ତ୍ର ଚୂରଣ' ଚିତ୍କାରଟା ଯେ ଦେଶରେ କ୍ରମେ ଶ୍ରୁତିମଧୁର ହୋଇ ଉଠୁଛି ଏକଥା ସହଜରେ ବିଶ୍ୱାସ କରି ହେଉନି । ଏମାନେ ଯେ ବଡ ବଡ଼ ଦିନେ ଆସୋସିଏସନ୍ ଗଢିବେ, ଏକଥା କିଏ ନ କହିବ ? ଭୋଟ ନ ଦେବାର-ଭୟ ଦେଖାଇ ସେମାନେ ବି ଲାଇସେନ୍ସ ହାତ କରିପାରନ୍ତି ।

## ହାଲଡେନଙ୍କ ଉପଦେଶ

ଏହି ସମ୍ପର୍କରେ ଆଜି ବୈଜ୍ଞାନିକ ହାଲଡେନଙ୍କ କଥା ମନେ ପଡ଼ୁଛି । ସେହି ବିଖ୍ୟାତ ଗବେଷକ ଇହଧାମରୁ ବିଦାୟ ନେଲେଣି । ସୁଦୂର ଇଂଲଣ୍ଡରୁ ସେ ଭୁବନେଶ୍ୱରକୁ ଆସିଥିଲେ ସୁରୁଖୁରୁରେ ମନଇଚ୍ଛା ଗବେଷଣା କରିବାପାଇଁ । ଭାରତର ନାଗରିକତା ବି ଗ୍ରହଣ କଲେ । ସେ ସାରାଜୀବନ ଗବେଷଣାରେ ବିତେଇ ଦେଲେ । ସେତିକରେ ତାଙ୍କ ମନ ମାନିଲା ନାହିଁ । ଜୀବନ ଗଲାବେଳେ ସେ ଅନୁରୋଧ କଲେ ଯେ, ତାଙ୍କ ଶବଟି ମଧ୍ୟ ଗବେଷଣାରେ ଲାଗିବ । ସେହି ମହାନୁସନ୍ଧାନୀ ଭାରତୀୟ ଔଷଧ ସମ୍ବନ୍ଧରେ ଯାହା ଲେଖିଥିଲେ ତାର ଓଡ଼ିଆ ଅନୁବାଦ ଖବରକାଗଜରେ ବାହାରିଥିଲା । ରାସ୍ତା କଡ଼ର ଏକ ଚୂରଣିଆ ବଇଦ ଔଷଧକୁ ରାସାୟନିକ ବିଶ୍ଳେଷଣପାଇଁ ସେ ବମ୍ବେ ପଠାଇଥିଲେ । ବିଶେଷଜ୍ଞ ମତ ଦେଲେ ଏଭଳି ଅବାଂଛିତ ଔଷଧକୁ ବିନା ବିଧାରେ କଣ୍ଡୁଛନ ଚର୍ମରେ ପ୍ରଲେପ ଦେଲେ ଚର୍ମ କ୍ୟାନସର ହୋଇପାରେ । ସେ ତାଗିଦ୍ କରି କହିଥିଲେ ଜଟକଣା ନ କଲେ ଅନେକ ମାରାତ୍ମକ ବିଷାକ୍ତ

ଔଷଧ ଦେଶବାସୀଙ୍କ ରକ୍ତରେ ମିଶିଯିବ । ଲେଖାଟି ଅନେକେ ପଢ଼ିଥିବେ କିନ୍ତୁ ନେତାଙ୍କୁ ତାହା ଚେତାବନୀ ଶୁଣାଇଲା ବୋଲି ମନେ ହେଉନି ।

## ବଟିକା ଆକ୍ରମଣ

ଆମର ସାମରିକ ସତର୍କତା ଫଳରେ ପଙ୍ଗପାଳ ପରି ମାଡ଼ି ଆସୁଥିବା ଚୀନାଏ ଆଜି ସୀମାନ୍ତରେ କାବୁହୋଇ ବସିଛନ୍ତି ; କିନ୍ତୁ ଆଜି ଏ ଦେଶର ଗଳିକନ୍ଦିରେ ବଟିକା ଆକ୍ରମଣ ବ୍ୟାପିଯାଇଛି । ପ୍ରତି ଔଷଧ ଦୋକାନରେ ସାନ-ବଡ଼, ଡେଙ୍ଗା-ଗେଡ଼ା, ରଙ୍ଗ-ବେରଙ୍ଗ ବୋତଲମାନଙ୍କରେ ବିଚିତ୍ର ବର୍ଣ୍ଣାଳୀର ମନଲୋଭା ଦୃଶ୍ୟ ନେଇ ବଟିକାମାନ ସଜେଇ ହୋଇଛନ୍ତି । ରୋଗର ଖାଲି ଆଭାସ ପାଇଲେ ଲୋକେ ଏମାନଙ୍କୁ ଗିଳି ଲାଗିଛନ୍ତି । ଡାକ୍ତରଙ୍କ ବ୍ୟବସ୍ଥାପତ୍ର ସଙ୍ଗରେ ନେବା ଦରକାର ନାହିଁ । ଦୋକାନୀର ତାକୁ ଦେଖିବାକୁ ବେଳ ନାହିଁ କି ରୋଗୀର ଏଥିପାଇଁ ପଇସା ନାହିଁ । ଘରେ ପାନ, ସିଗାରେଟ ବା ଗୁଣ୍ଡାଖି ମହଜୁଦ କଲାଭଳି ଅନେକ ଲୋକ ଘରେ କେତେ କିସମର ବଟିକା ସମୟ ଅସମୟପାଇଁ ସାଇତି ରଖିଛନ୍ତି । ଅବେଳରେ ଦରକାର ପଡ଼ିଲେ କୁଆଡ଼େ ଯିବା ଦରକାର ନାହିଁ । ଖାଲି ପାଣି ମଗଏ ହେଲେ କାମ ଚଳିବ । ସୁଲଭ ପ୍ରାପ୍ତିପାଇଁ ସାରିଡନ, ଆନାସିନ ପ୍ରଭୃତି ବଟିକା ଭୁଜା, ଚୁଡ଼ା ପରି ପାନ ଦୋକାନରେ ସାଇତା ହେଲାଣି । ବାସ୍ତବିକ ବଟିକା ଆମକୁ ଆସ୍ତେ ଆସ୍ତେ କରଗତ କରିସାରିଲାଣି । ଆମେ ଏମିତି ଅଭ୍ୟସ୍ତ ହେଲୁଣି ଯେ ସଲ୍‌ଫା ବା ପେନ୍‌ସିଲିନ କିଣିଲେ ବି ଡାକ୍ତରଙ୍କ ପାଖକୁ ନ ଯାଇ ଆମ ସ୍ମୃତିଶକ୍ତି ଉପରେ ନିର୍ଭର କରୁଛୁ ।

## ବୃଦ୍ଧି ସମସ୍ୟା

ଆଜି ଆମ ଦେଶରେ ଲୋକ ସଂଖ୍ୟା, ଡାକ୍ତର ସଂଖ୍ୟା, ରୋଗ ସଂଖ୍ୟା ଓ ବଟିକା ସଂଖ୍ୟା ସବୁ ବଜାର ଦର ପରି ବଢ଼ି ଲାଗିଛି । ଅବଶ୍ୟ ଏ ସଂଖ୍ୟା-ଗୁଡ଼ିକ ଏପରି ସମ୍ପୃକ୍ତ ଯେ ଗୋଟିଏ ବଢ଼ିଲେ ଅନ୍ୟଗୁଡ଼ିକ କଣ ହେବେ କୌଣସି ଗାଣିତିକ ନିୟମରେ କହିହେବ ନାହିଁ । ମନେ କରନ୍ତୁ ଏଇ ଡାକ୍ତର ସଂଖ୍ୟା ବଢ଼ିଲା—ଲୋକସଂଖ୍ୟା କଣ ହେବ ? କମିବ ନା ବଢ଼ିବ ? ସେ କଥା କିଏ କହିପାରିବ ? ସେମିତି ବଟିକା ସଂଖ୍ୟା ବଢ଼ିଲେ ରୋଗସଂଖ୍ୟା କଣ ହେବ ? ସାଧାରଣତଃ ସମସ୍ତେ କହିବେ କମିଯିବ ; କିନ୍ତୁ ତାହା ଲୋକ ଓ ଡାକ୍ତରଙ୍କ ଉପରେ ନିର୍ଭର କରେ । ଯାହା ହେଉନା କାହିଁକି ଡାକ୍ତର ଅନ୍ୟ

ଜନ ସଂଖ୍ୟାର ( ଲୋକ, ରୋଗ ଓ ବଟିକା ) ନିୟନ୍ତ୍ରଣକାରୀ ; କିନ୍ତୁ ସେମାନଙ୍କୁ ଉପଯୁକ୍ତ ଯୋଗ୍ୟତା ଯୋଗାଇବା ଆମ ବଡ଼ବଡ଼ଆଙ୍କ ହାତରେ । ଡାକ୍ତରମାନେ ଯଦି ଔଷଧର ଦୋଷଗୁଣ ଉପରେ ଗବେଷଣା ନ କରି, ଗବେଷଣାତ୍ମକ ଲେଖା ଔଷଧ ପ୍ରୟୋଗର ଫଳାଫଳକୁ ଅନୁସରଣ ନ କରି କେବଳ କମ୍ପାନୀ ନମୁନାକୁ ବ୍ୟବସ୍ଥାପତ୍ର ଲେଖିବେ ତାହା ହେଲେ ଏହି ସଂଖ୍ୟାମାନଙ୍କ ସମ୍ପର୍କ କଣ ହେବ ପାଠକେ ବିଚାର କରନ୍ତୁ ।

ବିବିଧ ଚିକିତ୍ସା

ଏ ଦେଶରେ ଭାଷା ଅନେକ ; ଲୋକ ଅନେକ ରଙ୍ଗର ; ସେମାନଙ୍କ ଆକୃତି ଅନେକ, ଧର୍ମ ବି ଅନେକ । ତଥାପି ଆମେ ସମସ୍ତେ ଭାରତୀୟ । ଏହାହିଁ ଆମର ଗର୍ବ । ଏ ଦେଶକୁ ଗୋଟିଏ ଦେଶ ବୋଲି ମାନିବାକୁ ବିଦେଶୀମାନେ ଏବେ ବି ସନ୍ଦେହୀ ; କିନ୍ତୁ ଆମେ ତାଙ୍କୁ ଦେଖାଇବାକୁ ଚାହୁଁ ଯେ ପ୍ରତି କ୍ଷେତ୍ରରେ ବିଭିନ୍ନତା ଭିତରେ ଏକତା ଅଛି । ସେଥିପାଇଁ ଆମେ ବିଭିନ୍ନତା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଜାତୀୟ ଏକତା ସମିତି ଗଢ଼ିବାକୁ ଦୃଢ଼ ପଦକ୍ଷେପ ନେଉଛୁ । ଶିକ୍ଷା କ୍ଷେତ୍ରରେ ପିଲାଙ୍କପାଇଁ ଅନେକ ସ୍କୁଲ ଖୋଲିଛୁ । ମୌଳିକ ଠାରୁ ଆରମ୍ଭ କରି ପବ୍ଲିକ୍, କନଭେଣ୍ଟ୍, କେମ୍ବ୍ରିଜ, ଡେମୋନ-ଷ୍ଟ୍ରେସନ ସ୍କୁଲ, ସେଣ୍ଟ୍ରାଲ ସ୍କୁଲ, ଟେକ୍‌ନିକାଲ ସ୍କୁଲ ଇତ୍ୟାଦି ଇତ୍ୟାଦି । ଚିକିତ୍ସାକ୍ଷେତ୍ର କାହିଁକି ବାଦପଡ଼ନ୍ତା ? ଏଲୋପ୍ୟାଥିକ, ହୋମିଓପ୍ୟାଥିକ, ଆୟୁର୍ବେଦିକ, ହାଇଡ୍ରୋପ୍ୟାଥିକ, ନେଚରୋପ୍ୟାଥିକ, ରାସ୍ତାକଡ଼ର ଅନାବନା ଚିକିତ୍ସା ଓ ଝଡ଼ା ଫୁଙ୍କା ଇତ୍ୟାଦି । ଏଥିରୁ ଅଳ୍ପ କେତୋଟି ସରକାରୀ ଅନୁମୋଦନ ପାଇଛନ୍ତି, ଅନ୍ୟଗୁଡ଼ିକ ବେସରକାରୀ ବା ପୂର୍ବପରି ଚଳୁଛି । ସରକାରଙ୍କ ବିନା ହେପାଜତରେ ସେମାନଙ୍କର ଯେ ସମୃଦ୍ଧି ନ ହେଉଛି ତା' ନୁହେଁ । ବିନା ଲାଇସେନ୍‌ସରେ ବ୍ୟବସାୟ କରିବାକୁ କିଏ ବା ଆପତ୍ତି କରିବ ? ସଂଖ୍ୟା ବଢିଲେ ସେମାନେ ଆସୋସିଏସନ ଗଢ଼ିବା କଥା ଚିନ୍ତା କରିବେ । ଗୋଟିଏ ମୌଳିକ ପୃଷ୍ଠଭୂମି ଉପରେ ସେମାନେ ବର୍ତ୍ତମାନ ଏକଜୁଟ ହେଉଛନ୍ତି ।

ଶସ୍ତା ଚିକିତ୍ସା

ସବୁ କଥା କହି ହେବନି । କହିବା ବି ଆମର ଲକ୍ଷ୍ୟ ନୁହେଁ । ଭାତହାଣ୍ଡିରୁ ଗୋଟିଏ ଭାତ ଚିପିବୁ । ହୋମିଓପ୍ୟାଥିକ କଥା ଚିନ୍ତା କରାଯାଉ । ଏମାନଙ୍କୁ ଲାଇସେନ୍‌ସ ମିଳିଛି । ସ୍ଥାନୀୟ ଦୋକାନରେ ରୋଗୀ ଧାଡ଼ି ବାନ୍ଧନ୍ତି । ଏହା ଶସ୍ତା,

ସବ୍ବସ ସମ୍ଭବ, ପିଲା-ଛୁଆ, ଯୁବକ-ଯୁବତୀ, ବୁଢ଼ା-ବୁଢ଼ୀ ସ୍ୱାଙ୍କ ବଞ୍ଚିବାକୁ ପାବୁକପର ପାଆନ୍ତି । ଏହାର ମନ୍ଦ ଫଳ ନାହିଁ । ମୂଷା, ବେଙ୍ଗ ବା ମାଙ୍କଡ଼ ପ୍ରଭୃତି ଇତର ପ୍ରାଣୀଙ୍କ ଉପରେ ଏହା ପ୍ରୟୋଗ ହୋଇନ । ସିଧାସଳଖ ମଣିଷ ଉପରେ ପରୀକ୍ଷିତ; ଶିକ୍ଷିତ, ଅଶିକ୍ଷିତ, ଅର୍ଦ୍ଧ-ଶିକ୍ଷିତ ବା ଉଚ୍ଚ-ଶିକ୍ଷିତ ସମସ୍ତେ ବାକ୍ସ ରଖି ନିଜ ଘରେ ଚିକିତ୍ସା କରିପାରିବେ । ଏ ସମ୍ବନ୍ଧରେ ମହାତ୍ମା ହ୍ୟାନିମାନ ଯେଉଁ ଗବେଷଣା କରିଛନ୍ତି ତାହା ଉଚ୍ଚକୋଟୀର ।

କେବଳ ଅସୁବିଧା ହେଲା ଏହା ଲକ୍ଷଣଗତ ଚିକିତ୍ସା । ଔଷଧ ଠିକଣା କରିବା ପୂର୍ବରୁ ଦେଖିବାକୁ ହେବ, ରୋଗୀ ଗୋରା ନା କଳା, ଶାନ୍ତ ନା ରାଗୀ, ମୋଟା ନା ପତଳା । କ'ଣ ଖାଇବାକୁ ଭଲପାଏ, କ'ଣ ଦେଖିଲେ ନାକ ଟେକେ । ରୋଗ କେତେବେଳେ କମୁଛି ବା କେତେବେଳେ ବଢୁଛି । ରୋଗ ବାଁ କଡରେ ନା ଡାହାଣ କଡ଼ରେ । ଏଥିରୁ ଗୋଟିଏ ଲକ୍ଷଣ ବଦଳିଲେ ଔଷଧ ବଦଳେ । ଗୋଟିଏ ନିର୍ଦ୍ଦିଷ୍ଟ ରୋଗର ସେମିତି କିଛି ଧରାବନ୍ଧା ଔଷଧ ନାହିଁ । ବରଫ ଖାଇ ଝାଡ଼ା ହେଲେ ଗୋଟିଏ ଔଷଧ, ତେଲ ଘିଅ ଖାଇ ଝାଡ଼ାହେଲେ ଅନ୍ୟ ଔଷଧ । ମାଛ ମାଂସ ଖାଇ ଝାଡ଼ା ହେଲେ ନୂଆ ଔଷଧ ବ୍ୟବସ୍ଥା କରିବାକୁ ହେବ । ତା ଉପରେ ପୁଣି ମୋଟା-ପତଳା ଓ କଳା-ଗୋରା କଥା ବିଚାରିବାକୁ ଅଛି ।

ଏମିତି ଲକ୍ଷଣ ଠଉରେଇଲା ବେଳେ ଅତି ସତର୍କ ହେବାକୁ ହୁଏ । ମହାତ୍ମା ହ୍ୟାନିମାନଙ୍କ ଅମଳ ଆଉ ନାହିଁ। ଲୋକଙ୍କ ଲକ୍ଷଣ ଦିନକୁଦିନ ଏତେ ବଦଳୁଛି ଯେ ସେ ବଞ୍ଚିଥିଲେ ମେଟେରିଆ ମେଡ଼ିକାରେ ଆଉ କେତେ ଲକ୍ଷଣ ଲେଖା ହୁଅନ୍ତାଣି ।

ପାର୍ଥକ୍ୟଗତ ଲକ୍ଷଣ ଠଉରେଇବାପାଇଁ ସେ ଲେଖିଥାନ୍ତେ, ଯେ ବାରମ୍ବାର ଦଳ ବଦଳାଉଛନ୍ତି ତାଙ୍କ ରୋଗକୁ ପଲସେଟିଲା ଦେଲେ ଯେ ଗୋଟିଏ ଦଳର ଅନୁଗତ ହୋଇ ତଳିତଳାନ୍ତ ହେଲେଣି ତାଙ୍କୁ ବେଲାଡୋନା ଦିଅ । ଯେ କଳେ-ବଳେ-କୌଶଳେ ମନ୍ତ୍ରିତ୍ୱ ଜାବୁଡ଼ି ଧରିଛନ୍ତି ତାଙ୍କୁ ନକ୍ସ ଭମିକା ଦେଲେ ଯେ ପାରୁପର୍ଯ୍ୟନ୍ତ ଚେଷ୍ଟାକରି ଏମ୍. ଏଲ୍. ଏ. ହୋଇ ପାରୁନାହାନ୍ତି ତାଙ୍କୁ କାର୍ବୋଭେଜ ଦିଅ । ଖଦଡ଼ ପିନ୍ଧି ପିନ୍ଧି ଯାହାର ଚମ ବଧିରା ପାଲଟିଲାଣି ତାଙ୍କୁ ସଲଫର ଦେଉଛନ୍ତି ତ ଟେରିଲିନ ବାଲାଙ୍କପାଇଁ ମାର୍କ ସଲ ବ୍ୟବସ୍ଥା କରନ୍ତୁ । ଗୋଡରେ ଚପଲ ନ ଥିଲେ କମ୍ବା ଗୋଜିଆ ଯୋତା ଥିଲେ ଔଷଧ ଦେଖି ଠିକଣା କରିବାକୁ ହେବ । ଏମିତି ଦିନକୁ ଦିନ ଲୋକଙ୍କ ଲକ୍ଷଣ

ବଦଳୁଛି । ଏସବୁ କଥା ବସ୍ତୁରକର ଗବେଷଣା କଲେ ବୋଧହୁଏ ଏ ନିଦାନବଧି ଭୟଙ୍କର ଜଟିଳ ହେବ ।

ଏସବୁ ମଧ୍ୟରେ ସମସ୍ତଙ୍କୁ ହୋମିଓପ୍ୟାଥି ବାକ୍ସ ଧରାଇବାକୁ ଉତ୍ସାହିତ କରିବା କଣ ବଞ୍ଛିତା ହେବ ? ରାମା, ଦାମା, ଶାମାଙ୍କୁ ଏ ଆସୋସିଏସନରେ ମେମ୍ବର କରିନେଲେ ଖାଲି ମୁଣ୍ଡଗଣତି ସାର ହେବ । ଏ ଦେଶର ଲୋକ-ସଂଖ୍ୟା ବଢ଼ିଛି ବୋଲି ଆମେ ଦରିଦ୍ର ଲୋକଙ୍କପାଇଁ ଯେ କୌଣସି ଶସ୍ତା ଚିକିତ୍ସା ଯାହା ତାହା ହାତରେ ବ୍ୟବସ୍ଥା କରିଦେବା ? ଏ ଦେଶରେ ଏ ମୁଣ୍ଡରୁ ସେ ମୁଣ୍ଡକୁ ବୁଲିଗଲେ ଦେଖିବାକୁ ମିଳିବ ଯେ କେଉଁଠି କଲେରା ରୋଗୀ ଉପରେ ମାଛି ଲଦି ହୋଇ ପାଣିତଳା ହେଉଛି ତ କାହାକୁ ଗୁଣିଆ ଗୁଞ୍ଜୁଣୀ ବାଡେଇ ଝାଡ଼ୁଛି । କେଉଁଠି ଡାକ୍ତର ବାବୁ ସାହେବ ପୋଷାକ ପିନ୍ଧି ବଟିକା ଗଣୁଛନ୍ତି ତ କେଉଁଠି ବୈଦବୁଢ଼ା ଦୋହଲି ଦୋହଲି ମୁଦୁକ କୁଟୁଛି । କେଉଁଠି ରୋଗୀ ବଟିକା ଗିଳୁଛି ତ କେଉଁଠି ଚେର ମୂଳ ରସରେ ରୋଗୀର ପାଟି ପିତା ହୋଇଯାଉଛି । ଆଜି କାହାଘରେ ପିଲାଟି ମାଆ ପାଖରେ ରାହାଧରି କାନ୍ଦୁଛି । ହୋମିଓପ୍ୟାଥି ବାକ୍ସଯାକର ଔଷଧ ଏକାବେଳକେ ଖାଇବାପାଇଁ ଯୋଉଠିଏ ରୋଗ କଲେରା କିନ୍ତୁ ଚିକିତ୍ସା ଅନେକ । ଗୋଟିଏ ଡାହାଣୀକୁ ପଲେ ଗୁଣିଆ । ଗଣତନ୍ତ୍ର ଶାସନରେ ସମସ୍ତେ ସ୍ୱତନ୍ତ୍ର । କିଏ କାହାର ଗତିବିଧି ନିୟନ୍ତ୍ରଣ କରୁ ନାହାନ୍ତି । ଏଥିରେ ପ୍ରଗତିର ଶଗଡ଼ ଗଡ଼ିବ କିପରି ?—

———




## ଗପ ନୁହେଁ

ଏ ଗପ ନୁହେଁ । ଅଙ୍ଗେ ନିଭେଇବା କଥା ; କିନ୍ତୁ ଆମକୁ ଏଠି ଗପପରି ଲାଗେ । ବିଲାତ ଓ ଆମେରିକା ଫେରନ୍ତା ବନ୍ଧୁଙ୍କଠାରୁ ଶୁଣିଥିଲି ଦରିଆ ସେପାରିରେ ରାତିରେ ମଶାମାନେ ଗୀତ ବୋଲି କାନ ଅତଡ଼ା ପକାନ୍ତି ନାହିଁ । ରାତି ନ ପାହୁଣୁ ଓଳଷ ନିଦରୁ ଉଠାଏ ନା । ଓଢ଼ଣାପକା ନୂଆବୋହୂ ଓ ମାଛି ଏକାବେଳକେ ସାତ ସପନ । ସହରର ମଝି ରାସ୍ତାରେ ଦିନେହେଲେ ଷଣ୍ଢ ଲଢେଇ ହୁଏନା କି ପଚିଶ କିଲୋଗ୍ରାମର ଏକ ଷୋକଲ ଦରବୁଢ଼ା ଓ ଦରଲଙ୍ଗଳା ଲୋକ ଅନ୍ତତଃ ଅଢ଼େଇଶ କିଲୋଗ୍ରାମର ଯୋଡ଼ିଏ ପୃଥୁଳକାୟଙ୍କୁ ରିକ୍ସାରେ ଲଦି କୌଣସି ଖାଲ ଢିପ ରାସ୍ତାରେ ଝାଳନାଳ ହୁଏ ନା । ଏସବୁ ସତ କଥା । ସେଠି ମାଲୁମ ନ ହେଲେ ମଧ୍ୟ ଏଠି ମନେପଡ଼େ । କିନ୍ତୁ ଗୋଟିଏ କଥା ସେଠି ବି ହଠାତ୍ ବିଶ୍ୱାସ କରି ହେଉନି । ତାହା ହେଉଛି ସେଠା ଦପ୍ତରରେ ଫାଇଲର ଦୌଡ଼ । ଫାଇଲ ପଛରେ କେହି ଲାଗିନି । ବନ୍ଧୁ ବାନ୍ଧବ, ପ୍ରିୟାପ୍ରୀତି କେହି ମନେ ପକେଇବାକୁ ନାହିଁ ଅଥଚ ଫାଇଲ ବିଜୁଳି ବେଗରେ ଦୌଡ଼ୁଛି ।

## ଦିନକ ଦୌଡ଼

ମୋତେ କାନାଡାର ବ୍ରିଟିଶ କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ଆଲବର୍ଟାକୁ ବଦଳି ହେବାକୁ ପଡ଼ିଲା । ବ୍ୟବଧାନ ପ୍ରାୟ ଛଅ ଶହ ମାଇଲ । ନାମ ଲେଖାବେଳ ଗଡ଼ିବାକୁ ବସିଲାଣି । ଆଲବର୍ଟା ବିଶ୍ୱବିଦ୍ୟାଳୟ ରାଜି ହେବ । କାନାଡା ସରକାରଙ୍କ ବୃତ୍ତି ନେଇ ଆସିଛି । ତେଣୁ ସରକାର ରାଜି ହେବେ । ଅତିରିକ୍ତ ଯାତାୟାତପାଇଁ ଅର୍ଥ ମଞ୍ଜୁର ହେବ । ମୋର କାନାଡ଼ାରେ ପହଞ୍ଚିବାର

ଜମା ବିଦେଶୀ ଜନ । ଚିହ୍ନା ପରିଚିତ କେହି ନାହିଁ । ପଦାର୍ଥ ବିଜ୍ଞାନର ମୁଖ୍ୟ ଅଧ୍ୟାପକଙ୍କୁ ଅନୁରୋଧ କଲି । ସେ ଟ୍ରଙ୍କଫୋନ୍ ଯୋଗେ ଆଲବର୍ଟା ବିଶ୍ୱବିଦ୍ୟାଳୟକୁ ରାଜି କରାଇଲେ । ସେଠା ଡିନ୍‌ଙ୍କୁ କହିଲି । ସେ ଦୁଇହଜାର ମାଇଲ ଦୂରରେ ଥିବା କାନାଡ଼ା ସରକାରଙ୍କ ଅଟୱା ଅଫିସକୁ ଫୋନ କଲେ । କମନ୍‌ୱେଲ୍‌ଥ କମିଟିର ସମ୍ପାଦକ ରାଜି ହୋଇ ଅତିରିକ୍ତ ବ୍ୟୟର ବନ୍ଦୋବସ୍ତ କଲେ । ୨୪ ଘଣ୍ଟାରୁ ଅଧିକ ସମୟ ଲାଗିଲା ନାହିଁ । ଡିନ୍‌ଙ୍କ ସେକ୍ରେଟେରୀ ବୁଢ଼ୀଟି ଟ୍ୟାକସି ଖଣ୍ଡିଏ ଡକାଇଦେଲେ । ଭ୍ୟାଙ୍କୋଭରର ପ୍ରାକୃତିକ ସୌନ୍ଦର୍ଯ୍ୟ ଉପଭୋଗ ନ କରି ଚାଲି ଯାଉଥିବାରୁ ବୁଢ଼ୀ ମୋ ପାଇଁ ଖୁବ ବ୍ୟସ୍ତ ହେଲେ । ସିଧାସଳଖ ଷ୍ଟେସନକୁ ଚାଲିଲି । ଟ୍ୟାକ୍‌ସିଚାଳକ ମୋତେ ନେଇ ରେଳଗାଡ଼ି ଟିକଟ କାଟୁଥିବା ଲୋକ ପାଖରେ ପହଞ୍ଚାଇ ଦେଲା । ସେ ମୋତେ ଖଣ୍ଡିଏ ଟିକେଟ ଧରାଇଦେଲେ । ଘୁଞ୍ଚି ପକେଟକୁ ଜାବୁଡ଼ି ଧରି ଅସୁମାରି ଧକ୍‌କା ଖାଇବାକୁ ପଡ଼ିଲା ନାହିଁ । ପରେ ସରକାରଙ୍କୁ ସେ ଟିକେଟପାଇଁ ବିଲ ଦେଇଥିବେ । ଟ୍ୟାକ୍‌ସିଚାଳକ ମଧ୍ୟ ସରକାରଙ୍କଠାରୁ ପରେ ପାଇଥିବ ।

ଦିନକ ମଧ୍ୟରେ ସବୁ ଯୋଗାଡ଼ କରି ଛଅ ଶହ ମାଇଲ ଦୂରସ୍ଥ ଏଡମଣ୍ଟନରେ ପହଞ୍ଚି ପାରିଲି । ଫଟୋ ଓ ସାର୍ଟିଫିକେଟ ଆଦି ତ ଭ୍ୟାଙ୍କୋଭରରେ ରହିଗଲା । ଏଠାରେ ନାମ ଲେଖାଇବାକୁ ଟିକେ ଡେରି ହେବ ତେଣୁ ଟିକେ ଚିନ୍ତିତ ହୋଇଯାଇ ସେଠା ଡିନଙ୍କୁ ଦେଖାକଲି । ଡିନ୍ ଦେଖିଲାମାତ୍ରେ ଚୌକିରୁ ଉଠିପଡ଼ି କରମର୍ଦ୍ଦନ କଲେ । ଏହା ତାଙ୍କର ସାଧାରଣ ଭଦ୍ରାମି । କାହାକୁ ଘଣ୍ଟା ଘଣ୍ଟା ଧରି ଟେବୁଲ ପାଖେ ଗୋଡ଼ ଭାଙ୍ଗି ଠିଆହେବାକୁ ପଡ଼େନା । ଡିନ୍ କହିଲେ, ତମର କାଗଜପତ୍ର ଭ୍ୟାଙ୍କୋଭରରୁ ଏଠାକୁ ଆସି ଯାଇଛି । ନାମ ଲେଖାଇଦିଅ ।" ଅବାକ୍ ହୋଇଗଲି, ବୁଝି ପାରିଲି ନାହିଁ ଯେ ମୋ ଫାଇଲ ଏତେ ଚଞ୍ଚଳ କିପରି ଆସିଲା ।

### ଆଉ ଏକ ଘଟଣା

ଏଡମଣ୍ଟନଠାରୁ ଦୁଇ ହଜାର ମାଇଲ ଦୂର ମଣ୍ଟ୍ରିଅଲରେ ଏକ ଆନ୍ତର୍ଜାତୀୟ ବୈଜ୍ଞାନିକ ସମ୍ମିଳନୀ ହେବାର ଥାଏ । ଏହା ମାସେ-କାଳ ବସିବ । ବିଖ୍ୟାତ ବୈଜ୍ଞାନିକମାନେ ନିଜ ନିଜ ବିଷୟରେ ବକ୍ତୃତା ଦେବେ । ଯୋଗ ଦେବାକୁ ଇଚ୍ଛାକରି କାନାଡ଼ା ସରକାରଙ୍କୁ ପତ୍ର ଲେଖିଲି । ଦିନେ ଜଣେ କିଏ ମୋ ଅଫିସ କବାଟ ଠକ୍ ଠକ୍ କଲେ । କବାଟ ଖୋଲି ଦେଖେ ତ ସେ ହେଉଛନ୍ତି ପଦାର୍ଥ ବିଜ୍ଞାନର ମୁଖ୍ୟ ଅଧ୍ୟାପକ । ମୋ ଟେବୁଲ ଉପରେ ବସିପଡ଼ି ପଚାରିଲେ, 'ତମେ କଣ ସମ୍ମିଳନୀରେ ଯୋଗ ଦେବାକୁ ଇଚ୍ଛା

କରୁଛ ? ମୋତେ ଡିନ୍ ଫୋନ କରିଛନ୍ତି । ମୁଁ ହିଁ ଭରିଲି । ତା'ର ଦିନକ ପରେ ଡିନ୍‌ଙ୍କ ସେକ୍ରେଟେରୀଙ୍କୁ ପଚାରିଲରୁ ସେ ଡିନ୍ ସୁପାରିଶ କରି ସରକାରଙ୍କୁ ଲେଖିଥିବା ଚିଠିଟି ଦେଖାଇଲେ । ସପ୍ତାହକ ପରେ ଉତ୍ତର ପାଇଲି । ଉତ୍ତରଟି ଏକ ଚିଠିର ନକଲ । କମନ୍‌ଓ୍ୱେଲଥ କମିଟିର ସମ୍ପାଦକ ବୈଦେଶିକ ସାହାଯ୍ୟ ଅଫିସକୁ ଲେଖିଛନ୍ତି । ବିଶ୍ୱବିଦ୍ୟାଳୟର ସୁପାରିଶ କ୍ରମେ ସମ୍ମିଳନୀରେ ଯୋଗ ଦେବାର ସମସ୍ତ ଖର୍ଚ୍ଚ ସରକାର ବହନ କରିବେ । ଟଙ୍କା ପଇସା କଥା ପୁଣି ହଜାର ହଜାର ମାଇଲ ଦୂରରୁ ଏତେ ଚଞ୍ଚଳ ଠିକ୍ ହୋଇପାରେ ।

ବ୍ୟାଙ୍କ୍‌ର କାରବାର .

ବ୍ୟାଙ୍କ୍‌ର କାରବାର ସମ୍ବନ୍ଧରେ ପଦେ କହେ—ବିଶ୍ୱବିଦ୍ୟାଳୟର ହତାକୁ ଲାଗି ମଣ୍ଟ୍ରିଅଲ ବ୍ୟାଙ୍କର ଏକ ଶାଖା । ଏଡମଣ୍ଟନ ଛୋଟ ସହର ହେଲେ ମଧ୍ୟ ଏହି ବ୍ୟାଙ୍କ୍‌ର ଆଉ ଦୁଇ ତିନୋଟି ଶାଖା ମଧ୍ୟ ଏଠାରେ ଅଛି । ଏହାଛଡ଼ା ଆହୁରି ଅନ୍ୟ ବ୍ୟାଙ୍କ୍ ମଧ୍ୟ ଏଠାରେ ଅଛି । ସାମାନ୍ୟ ଦି' ପଇସା ହେଲେ ମଧ୍ୟ ଏଠି ଲୋକେ ବ୍ୟାଙ୍କ୍‌ରେ ଜମା ଦିଅନ୍ତି । ଦୋକାନୀଙ୍କୁ ପରିଚୟ ଦେଲେ ହଜାର ହଜାର ଟଙ୍କାର ଚେକ୍ ମଧ୍ୟ ସେ ନିଃସନ୍ଦେହରେ ନିଏ । ବ୍ୟାଙ୍କ୍‌ର ଏଇ ଛୋଟ ଶାଖାରେ ୨।୩ ଜଣ ଝିଅ ବିଭିନ୍ନ ବିଭାଗରେ କାମ କରନ୍ତି । ସେମାନେ ଯେପରି ଅପେକ୍ଷା କରିଥାନ୍ତି କାମ କରିବାକୁ । କେହି ପହଞ୍ଚିଲେ ସେମାନେ ହସି ହସି ପଚାରନ୍ତି "ମହାଶୟ, କଅଣ ସାହାଯ୍ୟ କରିପାରେ କି ?" ଅବଶ୍ୟ ଏମାନଙ୍କ ପଛପଟେ କାନ୍ଥରେ ଲେଖା ହୋଇ ରହିଥାଏ, 'ସବୁବେଳେ ମୂରୁକି ହସ' । ତେଣୁ ମୁଣ୍ଡ ବଥାଇଲେ କି ପେଟ ଟାଣିଲେ ମଧ୍ୟ ଏମାନେ ବ୍ୟାଙ୍କ୍‌ରେ ଥିବାଯାଏ ହସୁ ହସ । ମୋତେ ନୂଆ ପାସବୁକ୍ କରିବାକୁ ୨।୩ ମିନିଟ ସମୟ ଲାଗିଥିଲା । ୩ ଇଞ୍ଚ ଓସାର ଓ ୪ ଇଞ୍ଚ ଲମ୍ବର ପାସବୁକ୍ । ଟଙ୍କା ଆଣିବାକୁ ଗଲେ ସେ ସେଇଥିରେ ଓ ଅନ୍ୟ ଏକ ଫାଇଲରେ କଳକା ଟଙ୍କା ଲେଖିଦେଇ ୨।୩ ମିନିଟରେ ଟଙ୍କା ଧରାଇ ଦିଅନ୍ତି । ବ୍ୟାଙ୍କ୍‌ରୁ ଟଙ୍କା ଆଣିବାକୁ ହେଲେ ମୋତେ ଯିବା ଆସିବା ଓ ଟଙ୍କା ଆଣିବା ସବୁକୁ ମିଶାଇ ୧୦ ମିନିଟ ସମୟ ଲାଗୁଥିଲା । ବେଳେ ବେଳେ ଧାଡ଼ିରେ ଠିଆ ହେବାକୁ ପଡ଼େ । ଲୋକଙ୍କର ଏତେ ଚଞ୍ଚଳ କାମ ଥିବାରୁ ବି, ଏମାନଙ୍କୁ ଧାଡ଼ିରେ ଠିଆହେବା କି କହି ଧାଡ଼ିରେ ଚାଲିବା କହିଲେ ମିଛ ହେବ ନାହିଁ । ବାଳକ ବାଳିକା କିପରି ଠିଆହୋଇ ଆଠଘଣ୍ଟା କାମକରେ । ବସିବାର ବନ୍ଦୋବସ୍ତ ନାହିଁ । ତଥାପି ସେ ହସେ । ଏବେ ଆମ ଏଠି କଲେଜର ଘଣ୍ଟାବଜା ଶୁଣି ମୁଁ ଡାକଘରକୁ ଯାଏ । ଯେମିତି ନେଡ଼ୁଗ କଲେ ଖ ଆଉ ପିଲଙ୍କର

ଘଣ୍ଟାବଜା ବେଳକୁ ଫେରି ପାରେନା । କୌଣସି ଦିନ ଯଦି ଦସ୍ତଖତର କୌଣସି ଅକ୍ଷର ନ ମିଳନ୍ତି ସର୍ଘ ଦେଡଘଣ୍ଟା ଧାଡ଼ିରେ ଧାରଣା ଦେବାପରେ ମଧ୍ୟ ପାସବୁକ୍ ଧରି ଫେରିଆସେ । କାଉଣ୍ଟରେ ମଣ୍ଡ୍ରିଅଲ ବ୍ୟାଙ୍କ୍ର ସ୍ମିତ ଓ ବାଳିକା କିରାଣୀର ସ୍ନିଗ୍ଧ ହାସ୍ୟ ମନେପଡ଼େ — ସପନ ଦେଖିଲା ପରି ଲାଗେ ।

ଡାକ୍ତରଖାନା କଥା

ଏ ହେଉଛି ଡାକ୍ତରଖାନା କଥା । କାନାଡାରେ ଭେଟେରାନ ଡ଼ିପାର୍ଟ-ମେଣ୍ଟ । ଅବସର ନେଇଥିବା ସରକାରୀ ଚାକରିଆଙ୍କ ଚିକିତ୍ସାଳୟ । ସରକାରଙ୍କ ବୃତ୍ତିଧାରୀ ହିସାବରେ ମୋତେ ସେଇଠିକି ଯିବାକୁ ହେଉଥିଲା । ଡେସ୍କ ପାଖେ ଠିଆ ହେଉ ହେଉ ଜଣେ ଲୋକ ସମସ୍ତ ହାଲ ବୁଝିକରି ବୁଝି ଫାଇଲଟିକୁ ଡାକ୍ତରଙ୍କ ଅଫିସକୁ ପଠାଇଦିଏ । ସେହି ଘରେ ଦେଶବିଦେଶର ପତ୍ରପତ୍ରିକା ମିଶି ପ୍ରାୟ ୧୦୦ ଖଣ୍ଡ ଜମା ହୋଇଥାଏ । ଘରର ସାଜସଜ୍ଜାରୁ ମନେହୁଏ ଏହା କୌଣସି ରାଜା ମହାରାଜାଙ୍କ ବୈଠକଖାନା । ପ୍ରାୟ ୧୦।୧୫ ମିନିଟ ମଧ୍ୟରେ ଏକ ନର୍ସ ଆସି ଡାକ୍ତରଙ୍କ ଅଫିସକୁ ଡାକି ନିଅନ୍ତି । ଡାକ୍ତର ସମସ୍ତ ଔଷଧପତ୍ରର ବନ୍ଦୋବସ୍ତ କରି ଚିକିତ୍ସା ମଧ୍ୟ ପ୍ରାଞ୍ଜଳଭାବେ ବୁଝାଇ-ଦିଅନ୍ତି । ବିଶେଷଜ୍ଞଙ୍କ ପାଖକୁ ଯିବାକୁ ହେଲେ ସେହି ଡାକ୍ତର ଫୋନଯୋଗେ ସମସ୍ତ ବନ୍ଦୋବସ୍ତ କରିଦିଅନ୍ତି । କାନାଡ଼ାରେ ଏହିପରି ଚିକିତ୍ସିତ ହେଉଥିଲା ବେଳେ ମୋର ଜଣେ ମଫସଲି ଆତ୍ମୀୟଙ୍କ କଥା ମନେ ପଡ଼ିଲା । ହୋମିଓ-ପାଥିରେ ତାଙ୍କ କାନଟଣା ଭଲ ନ ହେବାରୁ ସେ ବଡ଼ ଡକ୍ତରଖାନାକୁ ଆସିଲେ । ଏକ ହାତରେ ନିଜ କାନ ଓ ଅନ୍ୟହାତରେ ଜନତାଙ୍କୁ ଠେଲିପେଲି କରି ସେ ଆଗେଇ ଚାଲିଲେ । ନାକ କାନ ଓ ଗଳା ବିଭାଗ ପାଖେଇ ଆସିଲା ବେଳକୁ ସେ ଦେଖିଲେ ତାଙ୍କ ପକେଟରୁ ମନିବ୍ୟାଗଟି ଦୂରେଇ ଯାଇଛି । କାନଟଣା ସାଙ୍ଗକୁ ମୁଣ୍ଡବିନ୍ଧା ଆରମ୍ଭ ହେଲା । ବର୍ତ୍ତମାନ କାନମୁଣ୍ଡା ଆଉଁସି ବିନା ଟିକେଟରେ ଓ ଭୋକ ଉପାସରେ ସେ ଘରକୁ ଫେରିଲେ । ଘରେ ଶୁଣି କହିଲେ ତାଙ୍କ ଭାଗ୍ୟ ଭଲ ଯେ, ସେ ଟି. ଟି. ଆଇ. ହାବୁଡ଼ରେ ପଡ଼ି-ନାହାନ୍ତି ।

ସେପ୍ଟେମ୍ବର ୧୧ ତାରିଖ ଦିନ କାନାଡ଼ା ଛାଡ଼ିଲାବେଳେ ମୁଁ ଅଟଓ୍ବାକୁ ଖଣ୍ଡେ ଚିଠି ଲେଖିଲି ଯେ, ରେଳଗାଡ଼ିରେ ଆଗରୁ ପ୍ରଥମ ଶ୍ରେଣୀରେ ଖଣ୍ଡେ ଟିକଟ ନ କାଟିଲେ କଲିକତାରୁ କଟକ ଯିବାକୁ ଅସୁବିଧା ହେବ । ନିଉୟର୍କ ଓ ଲଣ୍ଡନରେ ବୁଲି କଲିକତାରେ ଠିକ୍ ସପ୍ତାହକ ପରେ ଓହ୍ଲାଇଲି । ଜାହା-ଜାହାଜ ଅଫିସରୁ ବି. ଓ. ଏ. ସି.ର ଜଣେ ଲୋକ ହାବଡ଼ାରୁ କଟକ ପାଇଁ

ଖଣ୍ଡେ ଫାଷ୍ଟକ୍ଲାସ ଟିକେଟ ଓ କାନାଡ଼ା ସରକାରଙ୍କ ଶଠି ମୋତେ ଧରାଇଦେଲେ । ମୋ ପାଖରେ କାନାଡାର ସାହେବ କେହି ନ ଥିଲେ । ବି. ଓ. ଏ. ସି. ର ସେଇ ବଙ୍ଗାଳୀ ଭଦ୍ରଲୋକଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଇଲି । ତେଣେ କଷ୍ଟମ କ୍ଲର୍କ ଡ଼ାକ ଛାଡ଼ିଲେ । ମୋ କାନ୍ଧରେ ଝୁଲୁଥିବା କ୍ୟାମେରାର ଦାମ କେତେ ? ଚେତା ଆସିଗଲା ଯେ ମୁଁ କଲିକତାରେ ।

## ମାଟ୍ରିକ୍ ପଢ଼ା ବାଳକ

ଏବେ ବନେ ବନେ ମନେପଡ଼େ । ବରିଆ ସେପାରିରେ ମାଟ୍ରିକ ପଢ଼ା ବାଳକ ସେମାନଙ୍କର ସ୍ୱାଭାବିକ ସହଜ ଓ ସରଳ ବୁଦ୍ଧିରେ କେତେ ସହଜ ସମସ୍ୟାର ସମାଧାନ ନ କରୁଛନ୍ତି । ଧାରଣାହୁଏ ସେ ଦେଶରେ ସେପରି ପୋଷାକ ଟାଣୁଆ ଶାସନ ବିଭାଗୀୟ କର୍ମଚାରୀ ନାହାନ୍ତି । ତେଣୁ ବୋଧହୁଏ ଗଭୀର ଚିନ୍ତା ଓ ବିଶ୍ଳେଷଣର ତାଡ଼ନାରେ ଫାଇଲକୁ ପୋକ କାଟେନା କମ୍ବା ଫାଇଲ ଗଦାର ଆଡ଼ୁଆଳରେ ବିନମ୍ରୋକଲ୍ କରଣୀ ନିଦ ଭାଙ୍ଗିବା ପାଇଁ ତାଜା ରାଜନୀତିର ଆଲୋଚନା କରେନା ।

ମହାଶୂନ୍ୟ ବକ୍ଷରୁ ଉପଗ୍ରହକୁ ଅପସୃତ କରି ମଣିଷ ଫେରାଇ ଆଣୁଥିଲାବେଳେ ଆମେ ଏକ କ୍ଷୁଦ୍ର କୋଠରୀ ଭିତରେ ଫାଇଲର ଗତିବିଧି ନିୟନ୍ତ୍ରଣ କରିପାରୁନା । ଯେତେ ବନ୍ଧୁବାନ୍ଧବ ଲଗାଇ ଚେଷ୍ଟାକଲେଁ ବି ତା ଗଦା ଭିତରେ ଆପେ ପୋତିହୋଇ ପଡ଼େ ଅଥଚ ବିଦେଶରେ ତାହା ଆପେ ଦୌଡ଼ିଲା ପରି ମନେହୁଏ କାହିଁକି ? ଏ ଦେଶପାଇଁ ଏ ଏକ ମୌଳିକ ପ୍ରଶ୍ନ ।

— · —




## ଭଦ୍ର ଟ୍ୟାକ୍ସି ଚାଳକ

ଥରୁଥରିଆ ଶୀତଦିନ । ବାହାରେ ବରଫ । ଶୀତରେ ଗୋଡ଼ହାତ କୋଲ ମାରି ଯାଉଛି । ରେଳଗାଡ଼ି ପହଞ୍ଚିଲା ଏଡ଼ମଣ୍ଟନ୍‌ରେ । ଏଡ଼ମଣ୍ଟନ୍ କାନାଡ଼ାର ୪ର୍ଥ ବୃହତ୍ତମ ସହର । ଷ୍ଟେସନଟି ଅନୁପାତରେ ବଡ଼ ନ ହେଲେ ମଧ୍ୟ ଆମ କଟକ ଷ୍ଟେସନଠାରୁ ଯଥେଷ୍ଟ ବଡ଼ । ଅନେକ ଯାତ୍ରୀ ଓହ୍ଲାଇଲେ ସତ କିନ୍ତୁ ଆମ ଦେଶ ଷ୍ଟେସନର ଆନ୍ଦୋଳନ ସେଠି ନାହିଁ । ପାନ ବିଡ଼ି ସିଗାରେଟ ବା ଗରମ ଚା'ର ଚିତ୍କାର କମ୍ବା ଜୋତାର ଧୂସର ରୂପ ବର୍ଣ୍ଣନା କିଛି କାନରେ ପଡ଼ିଲା ନାହିଁ । ଗାଡ଼ିରୁ ଓହ୍ଲାଇ ଓହ୍ଲାଇ ବୋକଚା ଭଡ଼ା ନେବାକୁ କୁଲି ବି ନାହାନ୍ତି । ସାହେବ ସାହେବାଣୀ ଯେ ଯାହାର ବୋକଚା ବୋହି ଚାଲିଲେ । ମୋର ହାଲକ ଶୁଖିଲା । ମୁଁ ପଚାଶ କିଲୋଗ୍ରାମର ହେଲେ ବି ସଙ୍ଗରେ ମୋର ୩୦ କିଲୋଗ୍ରାମର ଗଣ୍ଠିଲି । କରେ କଣ ? ପିମ୍ପୁଡ଼ି ଚାଲିଲା ବୋହିଲା ପରି ତାକୁ ଧରି ଫାଟକ ଆଡ଼େ ଚାଲିଲି । ଫାଟକ ନ ଡେଇଁଣୁ ସାଢ଼େ ୫ ଫୁଟର ଜଣେ ପତଳା ଗୋରା ଲୋକ ମୋର ନାମ ଧରି ମୋତେ ସ୍ୱାଗତ ଜଣାଇଲେ । ଭାଗ୍ୟକୁ ମଧ୍ୟ ସେ ମୋ ସୁଟକେଶ ଧରି ଆଗେଇ ଚାଲିଲେ । ଅଚିହ୍ନା ଜାଗାରେ ଏପରି ବନ୍ଧୁଙ୍କୁ ଅଚାନକ ଭେଟି କୃତଜ୍ଞତାରେ ଜୁଡ଼ୁବୁଡ଼ୁ ହୋଇଗଲି । ମନେ ମନେ ସ୍ଥିର କଲି ଏ ଜଣେ ଭଦ୍ର ଟ୍ୟାକ୍ସି ଚାଳକ । ସେ ବିଶ୍ୱବିଦ୍ୟାଳୟରେ କାମ କରନ୍ତି ବୋଲି କହିଲେ । ତେଣୁ ଭାବିନେଲି ଗୁଡ଼ିକୁ ନେବା ଆଣିବା ପାଇଁ ବିଶ୍ୱବିଦ୍ୟାଳୟର ଏ ସୁବନ୍ଦୋବସ୍ତ ।

ମୋତେ ମଟର ଗାଡ଼ିରେ ନେଇ ସେ ଖ୍ରୀଷ୍ଟିୟାନ ଯୁବ ସଂପ୍ରଦାୟଙ୍କ ହୋଟେଲରେ ପହଞ୍ଚାଇ ଦେଲେ । କ୍ଷୌର ହେଲା । ଗାଧୁଆପାଧୁଆ କଲି । ଘଣ୍ଟାଏ କାଳ ସେ ବାହାରେ ଅପେକ୍ଷା କରିଥାନ୍ତି । ତଥାପି ବିନା ବିରକ୍ତିରେ ହସି ହସି ସେ ବାଟରେ ମୋତେ ସହରର ଅନେକ ଦର୍ଶନୀୟ ଅଞ୍ଚଳ ଦେଖାଇ ଦେଲେ । ଏଇ ପରୋପକାରୀ ବନ୍ଧୁଙ୍କ ବିଷୟରେ ଅଧିକ ଜାଣିବାକୁ ଆଗ୍ରହ ହେଲା । ସନ୍ଧାନ କରି ଯାହା ଜାଣିଲି ପ୍ରଥମେ ବିଶ୍ୱାସ ହେଲାନି । ଭଦ୍ରବ୍ୟକ୍ତିଙ୍କ ନାମ ଡକ୍ଟର ଜ୍ୟାକ୍‌ଲେକ୍ । ସେଠି ମଟର ଇଞ୍ଜିନର ବିଶିଷ୍ଟ ଅଧ୍ୟାପକ । ମାସକୁ ପାଞ୍ଚ ହଜାର ଟଙ୍କା ଦରମା । ତାଙ୍କ ପାଖରେ ଆଠଜଣ ଛାତ୍ର ପି. ଏଚ. ଡି. ଡିଗ୍ରୀ ପାଇଁ ଗବେଷଣା କରୁଛନ୍ତି । ମୁଣ୍ଡରେ ମୌଳିକ ଚିନ୍ତାଧାରାର ବୋଝ । ତଥାପି ସେ ଦିନ ସେ ବଳେ ବଳେ ମୋ ସୁଟକେଶ ମୁଣ୍ଡେଇ ଥିଲେ । ଘଣ୍ଟାଏ କାଳ ବାହାରେ ଅପେକ୍ଷା କଲେ । ସିଧାସଳଖ ଭାରତରୁ ଆସି ତାଙ୍କୁ ଟ୍ୟାକ୍‌ସିଚାଳକ ଭାବିବାର ମୋର ବା ଦୋଷ କ'ଣ ?

## ଧାଡ଼ିରେ କୁଳପତି

ଦିନେ ସହର ଭିତରକୁ ଯିବାର ଥାଏ । ରାସ୍ତାକଡ଼ରେ ବସ୍‌କୁ ଅପେକ୍ଷା କରିଛି । ହଠାତ୍ ଜଣେ ମଟରଗାଡ଼ିଟି ଆଣି ବନ୍ଦକଲେ । ଗାଡ଼ି ଭିତରୁ ପଚାରିଲେ, "କଣ ସହର ଭିତରକୁ ଯିବ ? ଆସ ଗାଡ଼ିରେ ନେଇଯିବି । ଏଭଳି ଅପ୍ରତ୍ୟାଶିତ ଭଦ୍ରାମିରେ ଅଭିଭୂତ ହୋଇପଡ଼ିଲି । ଭଦ୍ରଲୋକ ଆଗରୁ କ୍ଷମା ମାଗିନେଲେ ଯେ ତାଙ୍କୁ ବାଟରେ ଜରୁରୀ କାମ ପାଇଁ ପାଞ୍ଚ ମିନିଟ ଅଟକିବାକୁ ପଡ଼ିବ । ସେଥିପାଇଁ ମୁଁ କିଛି ଭାବିବି ନାହିଁ । ମଟର ଚଲାଇ ଚଲାଇ ସେ ନିଜର ପରିଚୟ ଦେଲେ ଯେ ସେ ହେଉଛନ୍ତି ବିଶ୍ୱବିଦ୍ୟାଳୟର ପ୍ରେସିଡେଣ୍ଟ (ଆମ ଏଠା କୁଳପତିଙ୍କ ଠାରୁ ଆହୁରି କ୍ଷମତାଶାଳୀ) କାନାଡ଼ାର ସେଇ ସଡ଼କ ଉପରେ କଟକ କଥା ମନେପଡ଼ିଲା । ଅଧ୍ୟାପକ ହେବା ପରେ ଥରେ ପରୀକ୍ଷା ବାବଦ ଟଙ୍କା ଆଣିବାକୁ ଯାଇ ଅନ୍ୟମନସ୍କଭାବେ ବିଶ୍ୱବିଦ୍ୟାଳୟର ବାରଣ୍ଡାରେ ମୁଁ ବୁଲୁଛି । ହଠାତ୍ ଜଣେ ପିଅନ୍ ଆସି ଅଟକାଇଲା । "ବାବୁ ଆପଣ କୁଳପତିଙ୍କ ଅଫିସଆଡ଼େ ଯେ ଆଗେଇ ଆସୁଛନ୍ତି । କୁଆଡ଼େ ଯିବେ ?" ମୋର ଯୋତା ଶବ୍ଦରେ ପିଅନର ଭ୍ରମ ଭାଙ୍ଗିଥିବାରୁ ମୁଁ ଅଳ୍ପକେ ରକ୍ଷା ପାଇଗଲି । ଆଉ ଉତ୍ତର ଦେବି କ'ଣ ? ମନେ ମନେ ଯୋତାକୁ ଧନ୍ୟବାଦ ଦେଇ ସାବଧାନ ହୋଇ ଫେରି ପଡ଼ିଥିଲି । କାନାଡ଼ାର ଏହି କୁଳପତି କହୁଲାଗିଥାନ୍ତି" ଯେ ସେ ସବୁବେଳେ ଅଫିସ କାମରେ ବ୍ୟସ୍ତ ରହି ଛାତ୍ରଙ୍କ ସଙ୍ଗେ ମିଶିବାକୁ ସୁଯୋଗ ପାଉନାହାନ୍ତି ।

ବେଳେବେଳେ ଏଣ୍ଟ୍ ବସ୍ ଷ୍ଟାଣ୍ଡରୁ ପିଲାଙ୍କୁ ନିଜ ମଟରଗାଡ଼ିରେ ନେଇ ଯାହାଚିକେ ମନଖୋଲା କଥାବାର୍ତ୍ତା କରନ୍ତି ।

ବାଟରେ ବ୍ୟାଙ୍କରୁ ତାଙ୍କର ଟଙ୍କା ଆଣିବାକୁ ଥାଏ । ମଟର ଅଟକାଇଲେ । ଛାତ୍ରମାନେ ଏକ ଲମ୍ବା ଧାଡ଼ି ଦେଇଥାନ୍ତି । ସେମାନଙ୍କ ଭିତରୁ କେତେକ ହସି ଭଦ୍ରାମିରେ ପଚାରିଲେ, 'ଆପଣ କିପରି ଅଛନ୍ତି ।' କୁଳପତି ଏଇଥିରେ ଆପ୍ୟାୟିତ ହୋଇ ଉଠିଲେ ; କିନ୍ତୁ କେହି ତାଙ୍କୁ ଧାଡ଼ିର ଆଗକୁ ଯିବାକୁ ଡାକିଲେ ନାହିଁ । ସେ ଦେଖିଲେ ଟଙ୍କା ନେବାକୁ ୫ମିନିଟରୁ ଅଧିକା ସମୟ ଲାଗିବ । ପରେ ଟଙ୍କା ନେଇ ସେ ଫେରିଆସିଲେ । ବିଚରା କୁଳପତି ଜଣଙ୍କର ଅର୍ଦ୍ଦଳି ବା ପିଅନ ନାହାନ୍ତି । ବିଶ୍ୱବିଦ୍ୟାଳୟ ହତାରେ ବ୍ୟାଙ୍କ, ବିଶ୍ୱବିଦ୍ୟାଳୟର ମାଲିକଙ୍କୁ ଖାତିର କରି କେହି ଟିକେ ତାଙ୍କ କାମ ଆଗ କରିଦେଲା ନାହିଁ ।

## ପଦବୀ ନୁହେଁ ବ୍ୟକ୍ତି

କାଲିଫର୍ଣ୍ଣିଆର ସାନଫ୍ରାନ୍‌ସିସ୍କୋ କଥା ମନେ ପଡ଼ିଲା । ସେଦିନ ସନ୍ଧ୍ୟା ବେଳେ ଉଡ଼ାଜାହାଜରୁ ଓହ୍ଲାଇଲି । ମୋର ପରି ପ୍ରଥମଥର ଜନ୍ମଭୂଇଁ ଛାଡ଼ିଥାନ୍ତି ଜଣେ ଜାପାନ ଯୁବକ ଓ ଜଣେ ଥାଇଲାଣ୍ଡର ଯୁବତୀ । ଆମ ୩ ଜଣଙ୍କୁ ଆମେରିକା ନୂଆ । ଉଡ଼ାଜାହାଜରୁ ଓହ୍ଲାଇ କୁଆଡ଼େ ଯିବୁ ବୋଲି ଟିକେ ବିଚଳିତ ହୋଇପଡ଼ିଲୁ । ତିନିଜଣ ମାର୍କିନ ବାଳିକା ହସିହସି ଆମକୁ ସାହାଯ୍ୟ କରିବାକୁ ଆସିଥିଲେ । ନବାଗତ ଛାତ୍ରଛାତ୍ରୀଙ୍କୁ ବାଟକଢ଼େଇ ନେବା ଏମାନଙ୍କର କାମ । ନୂଆ ଲୋକ ଆମେରିକାରେ ଗୋଡ଼ ଦେଉ ଦେଉ ଅଡୁଆରେ ପଡ଼ି ଚିଡ଼ିଉଠିଲେ ଆମେରିକା ପ୍ରତି ମନ କାଳେ ବିଷେଇଉଠିବ ; ତେଣୁ ଅତିଥି ଅଭ୍ୟାଗତଙ୍କୁ ସମ୍ବର୍ଦ୍ଧନା ଜଣେଇବା ପାଇଁ ସେମାନେ ସବୁଦିନେ ସନ୍ଧ୍ୟାବେଳେ ପାଳିକରି ଆସନ୍ତି । ଆମେରିକାର ଚାଲିଚଳଣି ଓ ଢଙ୍ଗରଙ୍ଗ ସମ୍ବନ୍ଧରେ କାଗଜପତ୍ର ଓ ବହିପତ୍ର ବାଣ୍ଟନ୍ତି । ଧୀରେ ଧୀରେ ମିଠା ଗଳାରେ ଅନେକ ଜାଣିବା କଥା ବୁଝାଇ ଦିଅନ୍ତି । ନବାଗତ ବିଦେଶୀୟଙ୍କ ଇଂରାଜୀ ବୁଝି ବୁଝେଇବା ମହା କଠିନ ବ୍ୟାପାର ; କିନ୍ତୁ ମନେହୁଏ ବିରକ୍ତ ହେବା ଯେପରି ମାର୍କିନ ଜାତିର ଜାତକରେ ନାହିଁ । ସେମାନେ ଦେଇଥିବା ଏକ ବହିରେ ପଢ଼ିଥିଲି ଯୁକ୍ତରାଷ୍ଟ୍ର ଆମେରିକାରେ ବ୍ୟକ୍ତି ସମ୍ମାନର ଅଧିକାଂଶ ତାର ପଦବୀ ନ ସ୍ୱକସ ନୁହେଁ । ସେଇ ମାର୍କିନ ରୀତିରେ ପଡ଼ୋଶୀ କାନାଡ଼ା ଆଜି ପ୍ରଭାବିତ । ଏଥିପାଇଁ ବ୍ୟାଙ୍କ୍‌ରେ ବିଚରା କୁଳପତି ନିଜର ଛାତ୍ରମାନଙ୍କ ଧାଡ଼ିରେ ମଧ୍ୟ କୁଳପତି ମର୍ଯ୍ୟାଦା ନେଇ ପ୍ରଥମସ୍ଥାନ ଦଖଲ କରିପାରିଲେ ନାହିଁ । ଜନ୍

ହିସାବରେ ତାଙ୍କୁ ଟମ୍, ବବ୍ ଓ ଜ୍ୟାକ୍‌ଙ୍କ ପଛରେ ଧାଡ଼ି ଦେବାକୁ ପଡ଼ିଲା । ଦେଶର ଘଡ଼ି ପାଳିବାରେ ପୁଣି ଆତ୍ମ ଅଭିମାନ କ'ଣ ?

ରେଜିଷ୍ଟ୍ରାରଙ୍କ ଖାତାବଣ୍ଟା

ବିଶ୍ୱବିଦ୍ୟାଳୟ ଅଫିସରୁ ଖଣ୍ଡେ ଚିଠି ପାଇଲି ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ଜଗୁଆଳି( Invigilator) ହେବାପାଇଁ ମୋତେ ଅନୁରୋଧ କରା-ଯାଇଛି । ସେଦିନ ସକାଳୁ ଯାଇ ଦେଖେ ତ ବରଫ ହକି ଖେଳ ପାଇଁ ତିଆରି ହୋଇଥିବା ଘରେ ୫।୬ ଶହ ପିଲାଙ୍କ ପାଇଁ ସ୍ଥାନ ମହଜୁଦ ଅଛି । ଜଣେ ଭଦ୍ରଲୋକ ଗୋଟାଏ ଖାତା ଧରି ପ୍ରତି ସ୍ଥାନ ପାଇଁ ଖଣ୍ଡିଏ ଖଣ୍ଡିଏ ବାଣ୍ଟି ଲାଗିଛନ୍ତି । ତାଙ୍କୁ ମୋର ପରିଚୟ ଦେଲି । ସେ କର ମର୍ଦ୍ଦନ କରି କହିଲେ ଯେ, ସେ ହେଉଛନ୍ତି ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାର । ଆଖି ଓ କାନକୁ ବିଶ୍ୱାସ କରି ପାରିଲି ନାହିଁ । ପରୀକ୍ଷା ଖାତା ବାଣ୍ଟୁଛନ୍ତି ରେଜିଷ୍ଟ୍ରାର ନିଜେ । ଶୁଣିଛି ଆମ ଦେଶରେ ପରୀକ୍ଷା ଖାତା ଦେଖିଲାର ଛଅ ମାସକେ ଥରେ ଟଙ୍କା ମିଳେ । କାରଣ ରେଜିଷ୍ଟ୍ରାରଙ୍କୁ ବେଳ ହୁଏନା ଚେକ୍‌ରେ ଦସ୍ତଖତ କରିବାକୁ । ପାଇବା ଟଙ୍କାର ଅଧାଅଧି ରେଳ ରିକ୍‌ସାରେ ଦୌଡ଼ାଦୌଡ଼ିରେ ଖର୍ଚ୍ଚ ହୁଏ । ଏଠି ରେଜିଷ୍ଟ୍ରାର ନିଜେ ପିଲାଙ୍କୁ ପରୀକ୍ଷା ଖାତା ବାଣ୍ଟନ୍ତି । ଠିକ୍ କଥା, ଯେଉଁ ଦେଶ ଯେତେବଡ଼ ସେଠି ବଡ଼ ଲୋକେ ସେତିକି ଛୋଟ କାମ କରିବାରେ ଗୌରବାନ୍ୱିତ ମନେ କରନ୍ତି ।

ବିଶ୍ୱମୈତ୍ରୀ

ପୁଣି କୁଳପତି ଜନ୍‌ଙ୍କ ସହିତ କଥାବାର୍ତ୍ତା ହେବାର ସୁଯୋଗ ପାଇଲି ୨।୩ ମାସ ପରେ । ଭାରତୀୟ ଛାତ୍ରସମାଜ ରବୀନ୍ଦ୍ର ଜୟନ୍ତୀ ପାଳୁଥାନ୍ତି । ଭୋଜିର ଆୟୋଜନ ହୋଇଥାଏ । ସେଠା ଭାରତୀୟ ମହିଳାମାନେ ସ୍ୱହସ୍ତ-ନିର୍ମିତ ଭାରତୀୟ ସିଙ୍ଗଡ଼ା ଓ ରସଗୋଲା ଜମା କରିଥାନ୍ତି । ସାହେବ ସାହେବାଣୀମାନେ ତାରିଫ କରି ମନଇଚ୍ଛା ଖାଉଥାନ୍ତି । କେତେକ ସାହେବାଣୀ ମଧ୍ୟ ପୁଅ ଝିଅଙ୍କୁ ଚଖେଇବା ପାଇଁ ସଙ୍ଗରେ କିଛି ନେଉଥାନ୍ତି । ସେଇଠି ଦେଖିଲି କୁଳପତି ଓ ବିଶ୍ୱବିଦ୍ୟାଳୟର ଝାଡ଼ୁଦାର ଏକାଠି ଠିଆ ହୋଇ ଭାରତୀୟ ରସଗୋଲାର ତାରିଫ୍ କରି ଲାଗିଛନ୍ତି ।

ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଓ ସର୍ବନିମ୍ନ ବେତନଭୋଗୀଙ୍କ ମଧ୍ୟରେ ମନଖୋଲା କଥାବାର୍ତ୍ତା । ଜଣେ ମାସକୁ ଦଶ ହଜାର ଟଙ୍କା ପାଉଥିଲା ବେଳେ ଅନ୍ୟ ଜଣକ ପାଏ ଏକ ହଜାର ଟଙ୍କା । ବେତନର ତାରତମ୍ୟ ପୋଷାକରେ ଫୁଟି ଉଠୁଛି । ଉଭୟଙ୍କର ଗରମ ପୋଷାକ; କିନ୍ତୁ ଗୁଣଗତ୍ୟରେ ତଫାତ୍ । ଉଭୟେ ମଟରଗାଡ଼ି ଚଢ଼ି ଅଫିସକୁ ଆସନ୍ତି । ଜଣକର ୧୯୬୦ ମଡ଼େଲ

ଗାଡ଼ି ଓ ଅନ୍ୟ ଜଣକର ୧୯୫୦ ମଡ଼େଲ ; କିନ୍ତୁ ଏମାନେ କଥାବାର୍ତ୍ତା ହେଉଥିଲା ବେଳେ ଏଭଳି ଥଟ୍ଟା ଟାପରା କରି କଥାବାର୍ତ୍ତା ହୁଅନ୍ତି ଯେ ବିଶ୍ୱାସ ହେବନି ଏମାନଙ୍କ ମଧ୍ୟରୁ ଜଣେ କଲମ ଧରୁଥିଲା ବେଳେ ଅନ୍ୟ ଜଣକ ଝାଡ଼ୁ ଧରେ ।

ସେଠି କେହି ଆଜନ୍ମ ମେହେନ୍ତର ନୁହେଁ । ଆମ ଏଠା ପାଣ, କଣ୍ଡରା, ହାଡ଼ି, ବାଉରି ପରି ସେମାନେ ସେଠି ପୁରୁଷାନୁକ୍ରମେ ଜାତିର ଅଭିଶାପ ଭୋଗ କରନ୍ତି ନାହିଁ । ବଳବୟସ ନଇଁଲେ ଅନ୍ୟ କାମକୁ ଅଯୋଗ୍ୟ ହେଲେ ସାହେବ ମାନେ ଝାଡ଼ୁ ଧରନ୍ତି । ତେଣୁ କୁଳପତି, ଅଧ୍ୟାପକ, ପୋଲିସ, ସୈନ୍ୟ, ମିସ୍ତ୍ରୀ ଓ ଶ୍ରମିକ ବୟସାନୁକ୍ରମେ ଝାଡ଼ୁଦାରରେ ପରିଣତ ହୁଏ । ବିଶ୍ୱବିଦ୍ୟାଳୟରେ ଏମାନଙ୍କର ସ୍ୱତନ୍ତ୍ର ଅଫିସ ଓ ବିଶ୍ରାମାଗାର ଅଛି । ସୁଇଚ ଟିପି କଳ ସାହାଯ୍ୟରେ ଏମାନେ ଘର ସଫା କରନ୍ତି । କୁଳପତି ଜନ୍‌ଙ୍କ ପରି ମଧ୍ୟ ଏମାନେ ନିଜ ନିଜର ପିଲାପିଲିଙ୍କୁ ଧରି ଶନିବାର ଓ ରବିବାର ବଣଭୋଜି, ସମୁଦ୍ରସ୍ନାନ ଓ ଖେଳ ମଉଜରେ କଟାନ୍ତି । ସେଦିନ ରବୀନ୍ଦ୍ର ଜୟନ୍ତୀ ଉତ୍ସବରେ ମୋତେ ଦେଖି କାନାଡ଼ାର କୁଳପତି ଓ ଝାଡ଼ୁଦାର ରବୀନ୍ଦ୍ରନାଥଙ୍କ ସମ୍ବନ୍ଧରେ କେତେକ କଥା ପଚାରିଲେ । ମୁଁ ସେ ଦିଜଣଙ୍କୁ କବି ଗୁରୁଙ୍କର ବିଶ୍ୱମୈତ୍ରୀ କଥା କହିଲି । ଏଭଳି ଏକ ବିଶ୍ୱବରେଣ୍ୟ କବିଙ୍କର ଜନ୍ମଭୂଇଁ ଭାରତକୁ ସେ କେବଳ ପ୍ରଶଂସା କରି ଲାଗିଥାନ୍ତି, ମୁଁ କିନ୍ତୁ ଓଡ଼ିଶାର ହରିଜନ ବସ୍ତି କଥା ଭାବୁଥାଏ ।

— — —



## ସତ୍ୟସନ୍ଧାନୀ

ମନୋହର ସନ୍ଧ୍ୟାର ରଙ୍ଗିନ ବର୍ଣ୍ଣରେ ଆକାଶ ହସିଉଠେ । ଶୀତଳ ଜ୍ୟୋତ୍ସ୍ନାରେ ସୃଷ୍ଟି ଉନ୍ମାଦନା ହୁଏ । ଅଗଣିତ ଗ୍ରହ ନକ୍ଷତ୍ରରେ ରଞ୍ଜିତ ହୋଇ ନୀଳ ଗଗନ ଅସୀମତା ପ୍ରତିପାଦନ କରେ । ଫେନାୟିତ ତରଙ୍ଗମାଳାକୁ ବକ୍ଷରେ ନେଇ ସମୁଦ୍ର ଆହୁରି ସ୍ଫୀତ ହୋଇଉଠେ । ମନୋହାରିଣୀ ନର୍ତ୍ତକୀ ପରି ଋତୁମାନେ ରଙ୍ଗିନ ବେଶରେ ଅଭିନୟ କରନ୍ତି । ରାଜନୀତିର ଚକଚମକ ଦୁନିଆରେ ଗତ ପାର୍ଲାମେଣ୍ଟକୁ ଫକୀର ରାଜସିଂହାସନ ମଣ୍ଡନ କରେ ; କିନ୍ତୁ ନିଷ୍ଠାପର ବୈଜ୍ଞାନିକକୁ ଏ ସୁଖ ସମୃଦ୍ଧି ଉପଭୋଗ ପାଇଁ ଅବସର ମିଳେନା । ତା'ର ଉଦାସୀନ ଜୀବନ ସଂକୀର୍ଣ୍ଣ ଗବେଷଣାଗାରରେ ଜନ୍ମ ନିଏ ଓ ସେଇ ଗବେଷଣାଗାରରେ ହିଁ ସମାପ୍ତ ହୋଇଯାଏ, ଚାର୍ଲସ୍ କିଙ୍ଗ୍ସଲିଙ୍କ ଭାଷାରେ କେତେକ ବୈଜ୍ଞାନିକଙ୍କର ସାଧନା ଭିତରେ ଜୀବନର ଅବସାନ ହୋଇଯାଏ । ଯୁବକମାନଙ୍କୁ ନଷ୍ଟ କରୁଥିବାର ବାହାନା କରି କେତେକଙ୍କୁ ହତ୍ୟା କରାଯାଏ, କେତେକ ଫାଶୀ ଖୁଣ୍ଟରେ ଝୁଲନ୍ତି, କେତେକ କାରାଗାର ଭିତରେ ଆଜୀବନ ବନ୍ଦୀ ହୋଇ ଶେଷ ନିଃଶ୍ୱାସ ଛାଡ଼ନ୍ତି । ସେମାନଙ୍କ ମଧ୍ୟରୁ ଅନେକଙ୍କ ନାମ ଭୁଲି ହୋଇଗଲାଣି କିନ୍ତୁ ପ୍ରହେଳିକାମୟୀ ପ୍ରକୃତିର ଅନ୍ଧାରର ଭିତରୁ ସେମାନେ ଯେଉଁ ସତ୍ୟର ସନ୍ଧାନ ଦେଇଗଲେ ତାକୁ କେହି କେବେ ଭୁଲିଯାଇ ପାରିବ ନାହିଁ ।

## ନୀରବ ସାଧକ

ନିଜର ଜୀବନ ବିନିମୟରେ ଯେ ଅନ୍ୟକୁ ଶୂନ୍ୟର ବକ୍ଷ ଚିରି ନୀଳପଥରେ ଉଡ଼ିବାକୁ ଦେଲା, ନିଜେ ସ୍ନେହ ସୌହାର୍ଦ୍ଦ୍ୟରୁ ବଞ୍ଚିତ ହୋଇ ଯେ ଅନ୍ୟକୁ ସାତ ସମୁଦ୍ର ତେର ନଈ ଆରପାରିରୁ ବନ୍ଧୁର ସ୍ନେହସିକ୍ତ କଣ୍ଠସ୍ୱର ଶୁଣାଇଲା, ଆଜୀବନ ହତାଦର ଓ ତାଡ଼ନା ଭିତରେ ଯେ କ୍ଷୁଦ୍ରାଦପି କ୍ଷୁଦ୍ର ପରମାଣୁ

ଭିତରେ ମହାଶକ୍ତିର ସନ୍ଧାନ ଦେଇ ତିନ ଘଣ୍ଟା ଭିତରେ ପୃଥିବୀବ୍ୟାପୀ ମହାସମରର ହିସାବ ନିକାଶ କରିଦେଲା ତା ପ୍ରତି କି କେବେ ସମାଜ ଉଦାସୀନ ହୋଇପାରେ । ତେଣୁ ଦେଶ ଗୃହେଁ ଏଇ ନିଃସ୍ୱାର୍ଥପର, ସତ୍ୟ ଅନୁସନ୍ଧାନୀ ମୌଳିକ ସାଧକମାନଙ୍କୁ ଆଦର୍ଶ କରି ତାର ସନ୍ତାନମାନେ ଆଗେଇ ଆସନ୍ତୁ । ଚ୍ୟବନ ଋଷିଙ୍କ ଭଳି ଅନ୍ତ ୬୦ ବର୍ଷର ବୁଢ଼ାଙ୍କୁ ତାର ନଷ୍ଟଯୌବନ ଫେରାଇ ଦିଅନ୍ତୁ, କୌଶିକୀ ଇଞ୍ଜିନିୟର ଭଳି ସାଗରର ଊର୍ମି ତୋଳି ଶୂନ୍ୟ-ମଣ୍ଡଳରୁ ସୌର ଶକ୍ତି ସଂଗ୍ରହ କରି ପୃଥିବୀକୁ ଅଫୁରନ୍ତ ଶକ୍ତି ଦିଅନ୍ତୁ । ଶ୍ରେଷ୍ଠ ବୈଜ୍ଞାନିକ ରୂପରେ ଆକସ୍ମିକ ପ୍ରଳୟରୁ ମଣିଷ ଜାତିକୁ ରକ୍ଷା କରିବାକୁ ଗ୍ରହାନ୍ତରରେ ବସବାସ ପାଇଁ ଉପାୟ ଉଦ୍ଭାବନ କରନ୍ତୁ ।

**କନ୍ୟାପିତାଙ୍କ କରମର୍ଦ୍ଦନ**

ତେଣୁ ବିଜ୍ଞାନର ପ୍ରଗତି ପାଇଁ ଯୋଜନା ପରେ ଯୋଜନା ଗଢ଼ାହୁଏ । ଛନ୍ଦିର ଛନ୍ଦିର ହୋଇ ଅନେକ ବିଜ୍ଞାନ କଲେଜ ମୁଣ୍ଡ ଟେକେ । ଅଗଣିତ ଛାତ୍ର ନାମ ଲେଖାନ୍ତି ; କିନ୍ତୁ ଦେଶର କଳ୍ପନା ବାସ୍ତବରୂପ ପାଇ ପାରେନା । ପ୍ରତିବନ୍ଧକ ହୋଇ ଠିଆହୁଏ ବିଶ୍ୱବିଦ୍ୟାଳୟ ପରୀକ୍ଷା । ଛାତ୍ରର ଗୁଡି ଥିଲାଉଠେ ପ୍ରଥମ ଶ୍ରେଣୀରେ ପାଶ ନ କଲେ ଲକ୍ଷ୍ୟଭ୍ରଷ୍ଟ ହେବାକୁ ହୁଏ । ଡ଼. ଇଞ୍ଜ. ପଢ଼ି ଦରିଦ୍ରତାକୁ ଇସ୍ତମଗିରି ପଠା କରିନେବାକୁ ପଡ଼େ କମ୍ପା ଓକିଲାତିଠା ପଢ଼ି ଏକ ନିଷ୍ଠୁର ପ୍ରତିଦ୍ୱନ୍ଦିତା ଭିତରେ ଝାସ ଦେବାକୁ ହୁଏ । ଆଜି ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ବାହାରିଲେ ସ୍ୱପ୍ନ ସାର୍ଥକ ହୁଏ । କଉତାଳି ଗହଳରେ ଲାଟ ସ୍ୱୟଂ ବିଶ୍ୱବିଦ୍ୟାଳୟର ସୁନା ପଦକ ଛାତିରେ ଝୁଲାଇ ଦିଅନ୍ତି । ଫଟ ଉଠାଳମାନେ ବିନା ବିବାଦରେ ଫଟ ତୋଳି ନିଅନ୍ତି । ଖବରକାଗଜରେ ଚିତ୍ର ସହିତ ସଂକ୍ଷିପ୍ତ ଜୀବନୀ ବାହାରେ । କନ୍ୟାପିତାମାନେ ନିଜର ସମସ୍ତ ଆଭିଜାତ୍ୟ ଭୁଲି କରମର୍ଦ୍ଦନ କରନ୍ତି । ବାପ ମା ଗୁଡି ତ କୁଣ୍ଢେମୋଟ । ଗବେଷଣା କରିବାକୁ ସରକାରୀ ସାହାଯ୍ୟ ମିଳେ । ଦେଶ ବିଦେଶରେ ଉଚ୍ଚଶିକ୍ଷା ପାଇଁ ଅକ୍ଳାନ୍ତ ଉଦ୍ୟମର ଦରକାର ହୁଏନା । ଗୃହକରି ବାହାରି ପାଇଁ ହାତରୁ ପଇସା ଫିଙ୍ଗି କରି ବାରମ୍ବାର ଶୁଣ୍ଢିପିଣ୍ଡା ହେବାକୁ ହୁଏନା କି ଗୁଡ଼ାଏ ସ୍ୟାଣ୍ଡୁ ସ୍ୟାଣ୍ଡୁ ଅବାନ୍ତର ପ୍ରଶ୍ନର ଉତ୍ତର ସକାଳ କରିବାକୁ ପଡ଼େନା । ଏଥିରେ କେଉଁ ଛାତ୍ରର ପ୍ରଥମ ଶ୍ରେଣୀ ମୂଳ ଲକ୍ଷ୍ୟ ନ ହେବ ?

**ଲୁଚି କସରତ୍**

ତେଣୁ ସ୍ପଷ୍ଟତର ଶବ୍ଦ ରୂପ ପରି ବିଜ୍ଞାନ ବହିର ପୃଷ୍ଠାଗୁଡିକ ଘୋଷି ଜଳବତ୍ ତରଳ କରିବାକୁ ହୁଏ । ଶ୍ଳେଟ ଖାତାରେ ସମୁଦାୟ ସୂତ୍ର ଟିପି ଛାତି ପକେଟରେ ରଖିବାକୁ ପଡ଼େ । ପାଞ୍ଚ ବର୍ଷର ପରୀକ୍ଷା ପ୍ରଶ୍ନ ସଂଗ୍ରହ

ଘଷିବାକୁ ହୁଏ । ବଜାରରୁ 'ଗ୍ରହଙ୍କ ସାଥୀ', 'ପରୀକ୍ଷା ଗୃହ' 'ପରୀକ୍ଷାରେ କୃତକାର୍ଯ୍ୟତା' ପ୍ରଭୃତି ବହିଗୁଡ଼ିକ ଏତେ ଶୀଘ୍ର ସରିଯାଏ ଯେ ଛାତ୍ରକୁ ବେଳେ ବେଳେ କଳାପୋତେଇ ଦେଇ କିଣିବାକୁ ପଡ଼େ । ଦସ୍ତା ଦସ୍ତା କାଗଜରେ ଘଣ୍ଟା ଘଣ୍ଟା ଧରି ଉତ୍ତର ଲେଖା ଅଭ୍ୟାସ ଚାଲେ । ପରୀକ୍ଷାର ତାଡ଼ନାରେ ଭବିଷ୍ୟତର ବୈଜ୍ଞାନିକ ସାଧାରଣ ଦୃଷ୍ଟିଶକ୍ତି ହରାଇ ଉଦ୍ଧୃତିଗୁଡ଼ିକୁ ସମ୍ବଳ କରି ମନେ ରଖିବାର ଯାବତୀୟ କୁସ୍ତି କସରତ୍ ଆରମ୍ଭ କରିଦିଏ ।

ବିକାଶ ନା ବିନାଶ

ଯେଉଁ ବିଜ୍ଞାନର ଦୈଫଳତା ଉପରେ କେବଳ ଗୋଟିଏ ବ୍ୟକ୍ତି, ଜାତି ବା ଦେଶର ମଙ୍ଗଳ ନିର୍ଭର କରେନା ବରଂ ମନୁଷ୍ୟ ଜାତି ଉପକୃତ ହୁଏ ତାର ଉନ୍ନତିର ସମସ୍ତ ପଥ ଆମେ ଏଇଠାରେ ଅବରୁଦ୍ଧ କରିଦେଉଁ । ଶିକ୍ଷାର୍ଥୀର ମୌଳିକତା, ଅନୁସନ୍ଧିତ୍ସା, କଳ୍ପନାଶକ୍ତି, ଉତ୍ସାହ ଓ ସରସତା ସବୁ ଏକାଧାରରେ ଅକାଳମୃତ୍ୟୁ ବରଣ କରନ୍ତି । ଅନ୍ୟର ଚିନ୍ତାଧାରାକୁ ସୂତ୍ର ପରି ମାନିନେଇ ଅନର୍ଗଳ କହିଗଲେ ବ୍ୟକ୍ତିତ୍ୱର ବିକାଶ ହୁଏନା ବରଂ ବିନାଶ ହୁଏ । ପ୍ରକୃତ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ହେଉଛି ପ୍ରତ୍ୟେକ ଚିନ୍ତା ବା ତଥ୍ୟକୁ ବିଶ୍ଳେଷଣ କରି ନୂତନତ୍ୱର ସନ୍ଧାନ କରିବା । 'ଆମ୍ବ ପାଚିଲେ ଗଛରୁ ତଳକୁ ପଡ଼େ' ନିଉଟନ ମାନି ନେଇଥିଲେ ଗ୍ରହନକ୍ଷତ୍ରମାନଙ୍କ ଗତି ନିୟନ୍ତ୍ରଣ କରୁଥିବା ମହାକର୍ଷଣତତ୍ତ୍ୱର ସନ୍ଧାନ ମିଳି ନ ଥାନ୍ତା କି ରୁଷିଆ ଦେଶର କୁକୁର ଲାଇକାକୁ ଆଜି ଶୂନ୍ୟମଣ୍ଡଳରେ ଘୂରିବାକୁ ପଡ଼ି ନ ଥାନ୍ତା । ସେହିପରି ପ୍ରଭାବଶାଳୀ ବିଜ୍ଞାନ-ସମ୍ରାଟ ନିଉଟନ୍‌ଙ୍କର ଅନେକ-ତତ୍ତ୍ୱକୁ ହାଇଜେନ୍ ମାନି ନେଇଥିଲେ ଅନେକ ଘଟଣା ଅବୁଝା ରହିଯାଇଥାନ୍ତା । ତେଣୁ ବିଖ୍ୟାତ ବୈଜ୍ଞାନିକ ହକ୍‌ସ୍ଲେଙ୍କ ମତ "ବିଜ୍ଞାନ-କ୍ଷେତ୍ରରେ ବିଶ୍ୱାସ କଲେ ହେବନି, ବିଶ୍ଳେଷଣ କରି ପରୀକ୍ଷା ଓ ବିଚାର ଦ୍ୱାରହିଁ ମାନିବାକୁ ହେବ ।" ଫ୍ରାନ୍‌ସିସ ବେକନ୍ ମଧ୍ୟ ସେଇ ମତ ଦେଲେ "କେବଳ ବିରୋଧ ବା ସନ୍ଦେହ କରିବାକୁ କି ଅକୁଣ୍ଠିତ ଚିତ୍ତରେ ମାନି ନେବାକୁ ପଢ଼ନା । ପ୍ରତ୍ୟେକ କଥାକୁ ଉପଯୁକ୍ତ ବିଚାର ଶକ୍ତି ପ୍ରୟୋଗ କରି ତଉଲ କର ।"

ବିବିଧନେ ହାସଲ

ଛାତ୍ରଜୀବନରେ ହକ୍‌ସ୍ଲେ ବା ବେକନ୍‌ଙ୍କ ଉକ୍ତିକୁ ସମ୍ମାନ ଦେଖାଇଲେ ପରୀକ୍ଷାରେ କୃତକାର୍ଯ୍ୟତା ସନ୍ଦେହଜନକ । ସହଜରେ ବିଦ୍ୟୁତ୍‌କୁ ମାନିନେଇ ମନେ ରଖିବାକୁ ସ୍ତିତ ପାଡ଼ିଯାଏ, ବିଷୟ ସରେ ନାହିଁ । ବେଳେ ବେଳେ ଅସାଧୁ ଉପାୟ ଅବଲମ୍ବନ କରିବାକୁ ହୁଏ, ଈଶ୍ୱରଙ୍କ ନାମରେ ଗୁଳା ପକାଇ ବିଷୟ ବାଛିବାକୁ ପଡ଼େ । ତା ଉପରେ ପୁଣି ଗବେଷଣା

କରିବାକୁ ଦେଉ ନାହିଁ ? ଦୁଇବର୍ଷ ପାଠର କୃତିତ୍ୱ ଗୃହୀତନେ ହାସଲ କରିବାକୁ ହେଲେ ଗବେଷଣାର ତ ଆଦୌ ଦରକାର ନାହିଁ ବରଂ ମନେ ରଖିବା ବା ମାନିନେବା ମନୋବୃତ୍ତିର ଆଦବ କାୟଦା ହାସଲ କରିବାକୁ ଯାଇ ଗବେଷଣା ମନୋବୃତ୍ତିକୁ ହିଁ ହତ୍ୟା କରିବାକୁ ହେବ । ଉଇଲିୟମ୍ ଓ୍ୱେଷ୍ଟଓ୍ୱାଲ୍ଡ କହିଥିଲେ, "ଅନୁସନ୍ଧାନୀ ଗୁଡ଼ାଏ ଭାଷା ଶିକ୍ଷା କରିବା ଅନୁଚିତ । ଗୁଡ଼ାଏ ଭାଷାଗତ ସୂତ୍ରକୁ ମାନିନେବା ଦ୍ୱାରା ସେ ଏଭଳି ଅଭ୍ୟସ୍ତ ହୋଇଯାଏ ଯେ ତାର ସ୍ୱାଧୀନ ଚିନ୍ତାର ଶକ୍ତି ଲୋପ ପାଇଯାଏ ।" ସେଥିପାଇଁ ବିଖ୍ୟାତ ବୈଜ୍ଞାନିକ ଡାରଉଇନ୍ ଓ ଆଇନଷ୍ଟାଇନଙ୍କର ଲାଟିନ୍ ଭାଷା ପ୍ରତି ପ୍ରବଳ ବିତୃଷ୍ଣା ଥିଲା ; କିନ୍ତୁ ଆମର ପରୀକ୍ଷାପ୍ରଣାଳୀ ତ ବିଜ୍ଞାନକୁ ଭାଷାରେ ପରିଣତ କରିବାକୁ ବାଧ କରେ ।

## ପରଶମଣିର ଅଧିକାରୀ

ନିଃସନ୍ଦେହରେ କୁହାଯାଇପାରେ ପ୍ରଚଳିତ ପରୀକ୍ଷା ପ୍ରଣାଳୀ ବିଜ୍ଞାନର ଅଗ୍ରଗତିପାଇଁ ଅନୁକୂଳ ନୁହେଁ । ଛାତ୍ରକୁ ତା ଯନ୍ତ୍ର ପରି ମନେରଖିବାକୁ ଶିଖାଏ । ଏଥିରେ ପାଠ୍ୟପୁସ୍ତକର କଳଗାଉଣା ହେବା ଛଡ଼ା ଅନ୍ୟ ଉପାୟ ନ ଥାଏ । ବିଷୟବସ୍ତୁରୁ ସ୍ପଷ୍ଟତା ଓ ଆଗ୍ରହ ଦରବିକଶିତ ଅବସ୍ଥାରେ ମଉଳି ପଡ଼େ । କଳ୍ପନାଶକ୍ତି ସଙ୍କୁଚିତ ହୋଇଯାଏ । ଅନୁସନ୍ଧାନ ଧିମେଇଯାଏ । ଏଥିରେ ଛାତ୍ର ତାର ମୌଳିକତା ବଦଳରେ ସ୍ମୃତିଶକ୍ତିର ପରୀକ୍ଷା ଦିଏ । ଏହାଦ୍ୱାରା ଶତକଡ଼ା ୭୦ ଛାତ୍ର ଶତକଡ଼ା ୩୦ ନମ୍ବର ରଖି ନ ପାରି କକ୍ଷଚ୍ୟୁତ ଗ୍ରହଙ୍କ ପରି ଘୂରି ବୁଲନ୍ତି ।

ସେମାନେ ଯେଉଁ ପରାଜିତ ମନୋବୃତ୍ତି ଓ ନ୍ୟୂନମନୋଭାବ ନେଇ ସମାଜକୁ ଫେରନ୍ତି ସେଥିରେ ଦେଶ ଦୂଷିତ ହେବା ତ ସ୍ୱାଭାବିକ । ଖାଲି ସେତିକି ନୁହେଁ କେତେକଙ୍କଠାରେ ଆମେ ତୃତୀୟ ଶ୍ରେଣୀର ଏଭଳି ଏକ କୁଣ୍ଠା ମାରିଦେଉ ଯେ ସେମାନେ ଶିକ୍ଷିତ ରୂପେ ସମାଜରେ ମୁହଁ ଦେଖାଇବାକୁ ଲଜ୍ଜା ବୋଧ କରନ୍ତି । ଏବେ ଅବଶ୍ୟ ସେମାନେ ଶ୍ରେଣୀ ଉନ୍ନତି କରିବାର ସୁବିଧା ପାଇଲେଣି । ଯେଉଁ କେତେଜଣ ସେମାନଙ୍କର ପ୍ରତିଭାର ମସ୍ତକ ଚର୍ବଣ କରି ପ୍ରଥମ ଶ୍ରେଣୀ ପାଆନ୍ତି ସେମାନେ ଗବେଷଣାକୁ ପଛରେ ପକାଇ ପରଶମଣିର ଅଧିକାରୀ ପରି ସବୁଆଡ଼େ କେବଳ ଫାଇଦା ଉଠାଇବାରେ ମାତିଯାଆନ୍ତି । ଆମେ ଏଣେ ଚିତ୍କାର କରୁ ଦେଶର ସମୟ, ଶକ୍ତି ଓ ଧନ ସରି ସରି ଆସିଲା ଅଥଚ ବିଜ୍ଞାନ ଆଗେଇ ପାରିଲା ନାହିଁ ।

---




ଆଜକୁ ୧୫।୨୦ ବର୍ଷ ତଳେ ପାଠ ପଢ଼ିବା ଥିଲା ଏକ ବଡ଼ଲୋକି ବେଉସା । ପୋଥି ପୁରାଣ ପଢ଼ି ଶିଖିଲେ ଗରବଙ୍କର ପୋଥିରେ ଡୋର ବନ୍ଧା ହେଉଥିଲା । ମାଟ୍ରିକ ପଢ଼ିବାପାଇଁ ରାଜା ଜମିଦାରଙ୍କ ପିଲାଏ କେବଳ ସହରକୁ ଆସୁଥିଲେ । ଏହାର ପ୍ରତ୍ୟକ୍ଷ ପ୍ରମାଣ ମିଳେ ସ୍କୁଲ କଲେଜର କେତେକ ପୁରୁଣା ଦପ୍ତରୀଙ୍କଠାରୁ । କଲେଜ ହଷ୍ଟେଲର ବୁଧିଆ ଓ ରଘୁ କହନ୍ତି, ସେତେବେଳେ ସେମାନେ ପିଲାଙ୍କଠାରୁ ଯେଉଁ ବକ୍‌ସିସ ପାଉଥିଲେ ତାହା ବୁଆଡ଼େ ଚଉଦ କ୍ୟାରଟ୍ ଯୁଗର ଚଉଦ ଗୁଣ । ତା'ପରେ ଦେଶ ସ୍ୱାଧୀନ ହେଲା । ଆମ ଦେଶର ଆମେ ହେଲୁ ମାଲିକ । ବୁଧିଆ ଓ ରଘୁର ଆୟ କମିଗଲା ସତ କିନ୍ତୁ ବାପୁଜୀଙ୍କ ସ୍ୱପ୍ନ ସାର୍ଥକ ହେଲା । ସାଆନ୍ତଙ୍କ ପିଲାଙ୍କ ସାଙ୍ଗରେ ନନ୍ଦ ମଲିକ ବାବନ ସେଠୀ ଓ ଗୋବିନ୍ଦ ପ୍ରଧାନଙ୍କ ପିଲାଏ ସହରକୁ ପାଠ ପଢ଼ିବାକୁ ଆସିଲେ । ଗାଁ ଗଣ୍ଡାରେ ଛତୁଫୁଟିଲା ପରି ସ୍କୁଲ ଖୋଲିଲା । ବୃକ୍ଷତଳେ ମସିଣାରେ ବସି ପିଲାଏ ମାଟ୍ରିକ ପାସ୍ କଲେ । ବ୍ରାହ୍ମଣ, କରଣ ଓ ଖଣ୍ଡାୟତଙ୍କୁ ଛାଡ଼ିଦେଲେ ସମସ୍ତେ ହରକାଣ୍ଟ ଭତ୍ତା ପାଇଲେ । କେବଳ ଗୁଣ୍ଡଦୁଧ ବା ଜଳଖିଆ ନୁହେଁ କେତେକ ସ୍କୁଲରେ ମଧ୍ୟାହ୍ନ ଭୋଜନ ବି ପରଷା ହେଲା । ଆଦିବାସୀଙ୍କ ଦରଲଙ୍ଗଳା ପିଲାଏ ପୁରା ପୋଷାକରେ ସ୍କୁଲରେ ଆସି ହାଜର ପକାଇଲେ ।

ପ୍ରାଥମିକ ଶିକ୍ଷକର ଦରମା ଦେଖୁ ଦେଖୁ ଟ୫୲ ରୁ ୫୦୲କୁ ବଢ଼ିଲା । ହାଇସ୍କୁଲ ଶିକ୍ଷକମାନେ ଟ୭୦୲ରୁ ଟ୧୨୦୲ ଦରମା ପାଇଲେ । କଲେଜରେ ଅଧ୍ୟାପକମାନେ ଟ୧୨୦୲ ବଦଳରେ ଟ୨୭୦୲ ମାସିକ ବେତନରେ ନିଯୁକ୍ତ

ପାଇଲେ । ଦେଶରେ ରାଜନୈତିକ ଚେତନା ଓ ଅର୍ଥନୈତିକ ସ୍ୱାଧୀନତା ସାଙ୍ଗକୁ ଶିକ୍ଷାର ବ୍ୟାପକତା ଉପରେ ପ୍ରବଳ ଦୃଷ୍ଟି ଦିଆଗଲା । ବର୍ତ୍ତମାନ ଦେଶର ନେତୃବର୍ଗ ଓ ଶିକ୍ଷାବିତ୍ ଉପଲବ୍ଧି କଲେ ଯେ ଶିକ୍ଷାର ପ୍ରସାର ପାଇଁ ପରୀକ୍ଷା ପ୍ରଣାଳୀକୁ ସରଳ କରକ । ପରୀକ୍ଷାରେ ଅକୃତକାର୍ଯ୍ୟ ହେଲେ ଅଭିଭାବକ ଓ ପିଲାଏ ନିଶ୍ଚୟ ହତାଶ ହୋଇପଡ଼ିବେ । ଶିକ୍ଷା ପ୍ରତି ଆଗ୍ରହ କମିଯିବ । ଆଖିପିଛୁଳାକେ ପ୍ରସାର ଯୋଜନା ଭୁଷୁଡ଼ିପଡ଼ିବ । ବର୍ତ୍ତମାନ ପାସ୍ ନମ୍ବର ୩୭ରୁ ୩୦କୁ କମାଇ ଦିଆଗଲା । ସଙ୍ଗେ ସଙ୍ଗେ ପରୀକ୍ଷାପ୍ରଣାଳୀକୁ ଏପରି କୋହଳ କରାଗଲା ଯେ ଯେପରି ଶତକଡ଼ା ସତୁରୀ ଛାତ୍ର ପରୀକ୍ଷାରେ ବିଜୟଟୀକା ପିନ୍ଧି ପାରିବେ । ଗାଁରେ ପଲ ପଲ ମାଟ୍ରିକ ପଢ଼ୁଆ ଯୁବକ ପଇଁତରା ମାରିଲେ । ଚୁଲିମୁଣ୍ଡର ଭୁଅଷୁଣୀମାନେ ମଧ୍ୟ ଇଂରାଜୀ କହିଲେ କିନ୍ତୁ ବୁଢ଼ାଏ ବ୍ୟସ୍ତ ହେଲେ ଯେ ତାହା ଶୁଦ୍ଧ ଇଂରାଜୀ ନୁହେଁ । ଡାକବାଜ ଯନ୍ତ୍ର ଗର୍ଜିଉଠିଲା । ବୁଢାଙ୍କ କଥାକୁ କାନ ଡେରିଲେ ଦେଶ ଆଗେଇ ପାରିବ ନାହିଁ । ଭୁଲ ପାଇଁ ଥକ୍କା ମାରି ଭକେଣି କରିବାକୁ ବେଳ ନାହିଁ । ଅନୁଶୋଚନା ଓ ଅନୁତାପ ଅଗ୍ରଣୀର ଲକ୍ଷଣ ନୁହେଁ । ସମାଲୋଚନା ଓ ପ୍ରତିବାଦକୁ କାନ ଡେରିଲେ ସଂସ୍କାର ପଛେଇଯିବ ।

ବର୍ତ୍ତମାନ ସମାଜରେ ସୁବିଧାବାଦୀ ଓ ସମାଲୋଚକ ମୁଣ୍ଡ ଟେକିଲେ ସବୁ କଥାରେ ପ୍ରତିବାଦ କରିବା ହେଲା ଏମାନଙ୍କର ଧର୍ମ । ଶିକ୍ଷାର ବ୍ୟାପକତା ଓ ପ୍ରସାରକୁ ଏମାନେ ଭିନ୍ନରୂପ ଦେଲେ । ଏମାନେ କହନ୍ତି ଯେ ଗାଁ ସ୍କୁଲର ଛପର ଉଡ଼ିଗଲାଣି । ଉପଯୁକ୍ତ ତାଲିମପ୍ରାପ୍ତ ଶିକ୍ଷକମାନଙ୍କ କଥା ଛାଡ଼ନ୍ତୁ । କେବଳ ହାଜର ମଜାଇବାକୁ ଲୋକ ମିଳୁ ନାହାନ୍ତି । ସ୍କୁଲର ଲାଇବ୍ରେରୀ ଘରେ କେବଳ ଭଙ୍ଗାଗୋଡ଼ିଆ ବେଞ୍ଚ ସମାନ୍ତରାଳ ହୋଇ ଶୋଇଛନ୍ତି । ଖଣ୍ଡିଏ ଚୌକିକୁ ନାନା ହେପାଜତରେ ସୁରକ୍ଷା ରଖାଯାଇଛି । ସଂସ୍କୃତ ପଣ୍ଡିତେ ବେଳେ ବେଳେ ଜିଦ୍ ଧରୁଛନ୍ତି ଯେ ସେ ଆଉ ବିଜ୍ଞାନ ବହି ପଢ଼େଇ ପାରିବେ ନାହିଁ । ବହିରେ କୁଆଡେ ଡାହାମିଛ ଲେଖା ହୋଇଛି । ମଣିଷ ବିଜ୍ଞାନାଗାରରେ ପାଣି ଓ ପବନ ତିଆରି କରିପାରିବ ତାଙ୍କର ବିଶ୍ୱାସ ହେଉନି । କେତେକ ଶିକ୍ଷକ ଆପତ୍ତି କରୁଛନ୍ତି ଯେ ଟ୧୦୦୯ ପାଇଁ ଦସ୍ତଖତ କରି କେତେଦିନ ଆଉ ଟ୫୦୯ ବେତନ ନେବେ । ଘରେ ତ ସେମାନଙ୍କର ପୁଣି ପିଲାଛୁଆ ଅଛନ୍ତି ! କେତେକ ଶିକ୍ଷକ ହୋମିଓପ୍ୟାଥିକ ଚିକିତ୍ସା ପାଇଁ ଲାଇସେନସ୍ ପାଇ ବ୍ୟବସା ଛାଡ଼ି ଦେଲେଣି । ସେମାନେ କହନ୍ତି, ବିନା ସୂତାରେ ହାଟ ନ କରି ସକାଳୁ ସଞ୍ଜ-ଯାଏ କାହିଁକି ବକର ବକର ହେବେ । କେତେକଙ୍କର ଟିଉସନ ପ୍ରାପ୍ୟ ସ୍କୁଲ ଦରମାର ଛଅଗୁଣ ହୋଇଥିବାରୁ ସେମାନେ କେବଳ ସ୍କୁଲକୁ ଟିଉସନ ପିଲା ଯୋଗାଡ଼ କରିବାକୁ ଆସୁଛନ୍ତି । ସ୍କୁଲରେ ଗ୍ରାମାର ପଢ଼ାଇବାକୁ ପ୍ରଧାନ

ଶିକ୍ଷକଙ୍କୁ ବେଳ କାହିଁ ? କୋର୍ଟ କଚେରୀ କମ୍ବା ଇନସପେକ୍ଟରଙ୍କ ଅଫିସକୁ ଦୌଡ଼ଧୌଡ଼ି ସେ ନୟାନ୍ତ ।

ଗାଁର ପ୍ରାଥମିକ ଶିକ୍ଷକ ମହାଶୟ ବଡ଼ ଉପଯୁକ୍ତ ଲୋକ । ସେ ସବୁଦିନେ ସ୍କୁଲକୁ ଆସନ୍ତି । ତାଙ୍କୁ ସବୁ ବିଦ୍ୟା ମାଲୁମ । ଜମି ମାପ, ଜାତକ ଦେଖା ଓ ଘର କାନ୍ଥକଟା ସବୁଥିରେ ତାଙ୍କୁ ଡାକରା । କେବଳ ରବିବାର ଓ ଛୁଟିଦିନ ମାନଙ୍କରେ ସେ ଗାଁ ଲୋକଙ୍କ ମଙ୍ଗଳପାଇଁ ମଧ୍ୟସ୍ଥ କାମ କରନ୍ତି । ଗାଁ ସର-ପଞ୍ଚ ହେଲେ ସ୍କୁଲ କାମରେ ଅବହେଳା ହେବ ବୋଲି କହିବୋଲି ସେ ନାଏବପଞ୍ଚ ହୋଇଛନ୍ତି । ବାଡ଼ର କରକୋଳି ଗଣ୍ଡିକ ବିକିବାକୁ ତାଙ୍କୁ ବେଳ ନାହିଁ । ଯତ୍‌ ସାମାନ୍ୟ ଗ୍ରହଣ କରି ସେ ସ୍କୁଲ ପିଲାଙ୍କୁ ବାଣ୍ଟି ଦିଅନ୍ତି । କରକୋଳି ସମୟରେ ଯୋଗକୁ ପରିଦର୍ଶକ ଆସିଲେ ତାଙ୍କ ହାକରାପାଇଁ ଧନ୍ୟବାଦ ମିଳିଥାଏ । ସେ ଏତେ ଚତୁର ଓ ବିବେକୀ ଲୋକ ଯେ, ଯଦି ସ୍କୁଲକୁ କେହି ଜାତକ ଦେଖେଇବାକୁ ଆଣେ ସେ ପିଲାଙ୍କ ପାଠପଢ଼ାରେ ଅବହେଳା ନ କରି ଉଦ୍ରଲୋକଙ୍କ କାମ ଚଳେଇ ଦିଅନ୍ତି । ପିଲାଙ୍କୁ ହଠାତ୍‌ ଏକ ପ୍ରବନ୍ଧ ରଚନା ବା କଡ଼ା ଅଙ୍କ ଖଣ୍ଡେ ଡାକିଦେଇ ଜାତକ ଦେଖାରେ ଲାଗିପଡ଼ନ୍ତି । ସେପରି ବାନ୍ଧବଗୃହ ନ କରି ଉଚ୍ଚତମ ଶ୍ରେଣୀର ସବୁ ପିଲାଙ୍କୁ ସେ ଟିଉସନ କରନ୍ତି । ତଥାପି ତାଙ୍କ ପାଞ୍ଚପ୍ରାଣୀଙ୍କ ପାଇଁ ସେ ଧାର ଉଧାର କରନ୍ତି । ଦୋକାନୀକୁ ଦେଖିଲେ ଟିକେ ଦୂରରୁ ବାଟକାଟି ଯାଆନ୍ତି । ତାଙ୍କର ଆପତ୍ତି ଯେ ଯୋଜନାରେ ଏତେ ନଦୀବନ୍ଧ ଓ ସ୍କୁଲ କଲେଜର ବନ୍ଦୋବସ୍ତ ହେଲା ଅଥଚ ଗୁଡ଼ିଏ ଦୋକାନ ଖୋଲିଲା ନାହିଁ । ସବୁ ମାସରେ ନଗଦ ଦେବାକୁ ପଡ଼ୁଛି ।

ଏ ତ ଗଲା ସ୍କୁଲସ୍ତରର କଥା । କଲେଜର ଅଧ୍ୟାପକମାନଙ୍କୁ ଶିକ୍ଷାର ଉନ୍ନତି ପାଇଁ ଯଥେଷ୍ଟ ସୁବିଧା ଦିଆହୋଇଛି । ଟିଉସନ କରିବାକୁ ପଡ଼ୁନାହିଁ । ସପ୍ତାହରେ କେବଳ ୨୧ ପିରିଅଡ଼ ପାଠ ପଢେଇବେ । (ବେଳେ ବେଳେ ଅବଶ୍ୟ ଦିନକୁ ୪.୫ ପିରିଅଡ଼ ପଢ଼େ) ଅନ୍ୟ ସମୟରେ ଗବେଷଣା ବା ପୁସ୍ତକ ରଚନାଦ୍ୱାରା ଜ୍ଞାନର ପରିସୀମାକୁ ପ୍ରସାର କରିବେ ।

ଦେଶରେ ସେମାନେ ହିଁ ମୋଟା ଦରମାଧାରୀ ଶିକ୍ଷକ ଓ ସମାଜରେ ପ୍ରତିଷ୍ଠିତ ବ୍ୟକ୍ତି ; କିନ୍ତୁ ଏମାନଙ୍କର ଅନୁତାପ ଯେ ଏମାନେ ସ୍କୁଲରେ ଶିକ୍ଷକ ହୋଇଥିଲେ ଅଳ୍ପ ଖର୍ଚ୍ଚ କରି ବେଶୀ ରୋଜଗାର କରିଥାନ୍ତେ । ଏମାନଙ୍କ ସାଙ୍ଗମାନେ କୁକୁଡ଼ା ପାଳନ ମାଛ ସଂରକ୍ଷଣରେ ବିଶେଷ ଜ୍ଞାନ ଅର୍ଜ୍ଜନ କରି ମଟର ଚଢ଼ୁଛନ୍ତି ଅଥଚ ଏମାନଙ୍କର ଦଦରା ସାଇକଲ ମରାମତି ପାଇଁ ପଇସା ନାହିଁ । କାରଖାନାର ଶ୍ରମିକ ସରକାରୀ କୋଠାଘରେ ବିଜୁଳିରେ ରହୁଥିଲା ବେଳେ ଏମାନଙ୍କୁ ଘର ମାଲିକ ଫିଟା ଗୃହଚ୍ଛତ୍ର ବିକାଲିବାପାଇଁ ବର୍ଷରେ ଦି'ଥର ଓକିଲ

ନୋଟିସ୍ ଦିଏ । ପୃଥିବୀପୃଷ୍ଠକୁ ଗ୍ରୀଷ୍ମକାଳ ଓହ୍ଲାଇବା ଆଗରୁ ଏମାନଙ୍କ ଘରେ ଗମ୍ ଗମ୍ ଖାଳ ବୁହେ । ସରକାରୀ ପିଅନ୍ଟି ଯେଉଁ ମର୍ଯ୍ୟାଦା ନେଇ ବସ୍ ବା ରେଳଗାଡ଼ିରେ ବସେ, ଡାକ୍ତରଖାନାରୁ ଔଷଧ ଆଣେ, ଦୋକାନ ବଜାରରୁ ସଉଦା କରେ, ଏହି ତଥାକଥିତ ଉଚ୍ଚପଦସ୍ଥ ବ୍ୟକ୍ତି ସେଇ ମର୍ଯ୍ୟାଦାର ଶତାଂଶ ବି ଭୋଗ କରନ୍ତି ନାହିଁ ତଥାପି ଏମାନଙ୍କର ଏହି ଶାନ୍ତ ଓ ନିରୀହ ଜୀବନକୁ କୁଆଡ଼େ କଲ୍ ମାଜିଷ୍ଟ୍ରେଟ ବି ଈର୍ଷା କରନ୍ତି ।

ଦେଶର କଅଁଳିଆ ପିଲା, ଘରେ ବାପା ମା ଓ ସ୍କୁଲରେ ଶିକ୍ଷକଙ୍କ ଆଚାର ବ୍ୟବହାର, ଚରିତ୍ର ଓ ବ୍ୟକ୍ତିତ୍ୱକୁ ଆଖି ଆଗରେ ରଖି ଗଢ଼ି ହୁଅନ୍ତି । ଆମେ ଯଦି ତାକୁ ଏକ ଅଭାବଗ୍ରସ୍ତ, ହତୋତ୍ସାହ, ପରାଭୂତ, ବୀତସ୍ପୃହ ଓ ଲକ୍ଷ୍ୟହୀନ ଶିକ୍ଷକ ଜିମା ଛାଡ଼ିଦେଉ ଏ ଦେଶର ଭବିଷ୍ୟତ ନାଗରିକ କିଭଳି ବଳିଷ୍ଠ ବ୍ୟକ୍ତିତ୍ୱ ନେଇ ଜନ୍ମ ହେବ ?

ଛାତ୍ର ଜୀବନର ସାଧନା ଭିତରେ ଯେଉଁ ଦାଗ ଆଙ୍କି ହୋଇଯାଉଛି ତାକୁ ଜନନାୟକ ଓଜସ୍ୱିନୀ ବକ୍ତୃତା ଦ୍ୱାରା ନିଭାଇ ପାରିବ ନାହିଁ । ଶିକ୍ଷକ ସାଧୁ, ସଚ୍ଚରିତ୍ର ଓ ଉଦାରହୃଦୟ ହୋଇଥିଲେ ମଧ୍ୟ ତାର ବୈଷୟିକ ଅଭାବଗୁଡ଼ିକ ତାର ଅବଚେତନ ମନରେ ଯେଉଁ ବିଷାକ୍ତ ଭାବ ସୃଷ୍ଟି କରିବ ତାକୁ ସେ ଶତ-ଚେଷ୍ଟା ସତ୍ତ୍ୱେ ଛାତ୍ର ସମକ୍ଷରୁ ଗୋପନ ରଖିପାରିବ ନାହିଁ । ଜ୍ଞାନପିପାସୁ ଓ ଅନୁସନ୍ଧିତ୍ସୁ ଛାତ୍ରକୁ ଯଦି ଜାଲ୍‌ଜୁଆଚ୍ଚୋର ଓ କଳାବଜାରୀର କରାମତି ଶିଖାଉ, ଦେଶରେ ଦକ୍ଷ ସୁଚତୁର ପୋଲିସ ବାହିନୀ ରହିଲେ ବି ଏ ଦୌରାତ୍ମ୍ୟ ଲୋପ ପାଇବ ନାହିଁ । ଶିକ୍ଷାର ବ୍ୟାପକତା ସଙ୍ଗେ ସଙ୍ଗେ କଳାବଜାର ଦେଶର ଗଳିକନ୍ଦିରେ ବ୍ୟାପିଯିବ ।

ଉପଯୁକ୍ତ ଦରମାପ୍ରାପ୍ତ ଶିକ୍ଷକ ସଂଗ୍ରହ ହିଁ ଶିକ୍ଷାମାର୍ଜନାର ପ୍ରଥମ ପଦକ୍ଷେପ ହେବା ଉଚିତ । ଶିକ୍ଷକର ମାନ ନିର୍ଦ୍ଧାରଣ ଉପରେ ହିଁ ଶିକ୍ଷାର ଉନ୍ନତି ନିର୍ଭର କରେ । ତା'ପରେ ଶିକ୍ଷାକ୍ଷେତ୍ରକୁ କଳୁଷିତ ରାଜନୀତି ଓ ଅବାଂଛିତ ସରକାରୀ ଗ୍ରହରୁ ସମ୍ପୂର୍ଣ୍ଣ ମୁକ୍ତ କରିବା ଉଚିତ । ଶେଷରେ ପାଠ୍ୟପୁସ୍ତକ ଶିକ୍ଷା ଓ ପରୀକ୍ଷା-ପ୍ରଣାଳୀର ଯୁଗୋପଯୋଗୀ ପରିବର୍ତ୍ତନ ଓ ସଂସ୍କାର ଆବଶ୍ୟକ । ଶିକ୍ଷାକ୍ଷେତ୍ରରେ ସାମାଜିକ ପରିବେଷ୍ଟନୀର ଯେ ପ୍ରଭାବ ପଡ଼ିବ ଏଥିରେ ସନ୍ଦେହ ନାହିଁ ; କିନ୍ତୁ ସାମାଜିକ ପରିସ୍ଥିତିକୁ ରୁଚିକର ଓ ସୁସ୍ଥ କରିବା ପର୍ଯ୍ୟନ୍ତ ଆମେ ଶିକ୍ଷା ସଂସ୍କାରକୁ ଅଟକାଇ ପାରିବା ନାହିଁ । କାରଣ ଶିକ୍ଷାର ସଂସ୍କାର ବା ଉନ୍ନତି ରୁଚିକର ଓ ସୁସ୍ଥ ସାମାଜିକ ପରିସ୍ଥିତିପାଇଁ ମଧ୍ୟ ଏକାନ୍ତ ଆବଶ୍ୟକ । କଳେ-ବଳେ-କଉଶଳେ ସାର୍ଟିଫିକେଟ ହାସଲ କରିବା ଶିକ୍ଷାର ଉଦ୍ଦେଶ୍ୟ ନୁହେଁ । ଦେଶର ଜାଲ୍ ଜୁଆଚ୍ଚୋର ଓ ଠାଉଟେରୀପାଇଁ ଅଶିକ୍ଷିତ ଯେତେ

ଦାୟୀ ନୁହେଁ ଅର୍ଦ୍ଧଶିକ୍ଷିତ ସେତେ ଦାୟୀ । ବିଦ୍ୟାଳୟଠୁ ଯଦି ଚମ୍ପା ତାର ସ୍ୱୈର ହୁଏ, ବିଶ୍ରାମାଗାର ଓ ରେଳଡବାରୁ ବଲ୍ବ ଓ ଘଣ୍ଟା ନିଆଯାଏ, କଡ଼ା ପରୀକ୍ଷକ ମୁଣ୍ଡରେ ଏସିଡ୍ ଢଳାଯାଏ ଏଥିପାଇଁ କିଏ ଦାୟୀ ହେବ ? ଦେଶର କେଉଁ ଆଦର୍ଶ ପୁରୁଷଙ୍କୁ ଆଖି ଆଗରେ ରଖି ଭବିଷ୍ୟତର ନାଗରିକ ନିଜକୁ ସଜାଡ଼ିବ ? ଆଜିକାର ବାସ୍ତବ ଅଧୋଗତିକୁ ଲକ୍ଷ୍ୟ ନ କରି ଆମେ ଯଦି ପରମ୍ପରା ଓ ସଂସ୍କୃତିର କେବଳ ଉଚ୍ଚ ପ୍ରଶଂସା କରୁଥାଉ ତେବେ ଏ ଜାତିର ମୂଳପିଣ୍ଡ ଦୋହଲି ଉଠିବ । ଆମ ସୁନେଲି ସ୍ୱପ୍ନର ଅସାରତା ସେତେବେଳେ ଆମେ ଉପଲବ୍ଧି କରିବୁ ସତ; କିନ୍ତୁ ଆମକୁ ସଜାଡ଼ି ନେବାକୁ ଆଉ ବେଳ ନ ଥିବ । ଯେଉଁ ଶିକ୍ଷକ ମୁହୂର୍ତ୍ତକ ମଧ୍ୟରେ ଯୁବହୃଦୟରେ ବିପ୍ଳବର ବହ୍ନି ଜାଳି ଦେବ ତାକୁ ଆମେ ଅବହେଳା ବା ଅବଜ୍ଞା କରିବା ନିରାପଦ ନୁହେଁ । କ୍ଷଣକରେ ଯେ ଭବିଷ୍ୟତର ନାଗରିକ ମଧ୍ୟରେ ବଳିଷ୍ଠ ଚେତନା ଖେଳାଇ ଦେବ ତାକୁ ଆଉ ଅଧିକ ନିର୍ଯ୍ୟାତନାରେ ସଢ଼ିବାକୁ ଦେବା ବିଜ୍ଞତା ନୁହେଁ । ସମାଜକୁ ଓ ଶିକ୍ଷାପ୍ରଣାଳୀକୁ ସୁଧାରି ନେବାକୁ ଏବେ ବି ବେଳ ଅଛି ।



# ପରୀକ୍ଷା ଆସିଛି ଆଜି

ଏବେ ପରୀକ୍ଷା ଆସିଛି । ନୂଆ କରି ଆସିନାହିଁ । ଫି ବର୍ଷ ଆସେ । ତଥାପି ଛାତ୍ରନେତାଙ୍କଠାରୁ ଆରମ୍ଭ କରି ଡେପୁଟି ରେଜିଷ୍ଟ୍ରାରଙ୍କ ପର୍ଯ୍ୟନ୍ତ କାହାରି ଆଖିକୁ ଆଜି ନିଦ ନାହିଁ । ବିଶ୍ୱବିଦ୍ୟାଳୟ କର୍ମକର୍ତ୍ତାଙ୍କର ଖୋଜ ଖୋଜ ତେଜ ହେଉଛି ତ ବିଶ୍ୱବିଦ୍ୟାଳୟ ଛାତ୍ରଙ୍କର ଗୃହଁ ବୃହଁ ନିଦ ଭାଙ୍ଗୁଛି । ଅଭିଭାବକମାନେ ମଧ୍ୟ ସମପରିମାଣରେ ତତ୍ପର । ଫସଲ ଅମଳବେଳେ ଚାଷୀ ଯେମିତି ଖରାତରା ମାନେନା ସେମାନେ ସେମିତି ପାଗଯୋଗ ଖୋଜନ୍ତି ନାହିଁ । ସେତେବେଳେ ସେମାନେ ପ୍ରକୃତ ସ୍ଥିତପ୍ରଜ୍ଞ । ପାଦଚଲାରୁ ଆରମ୍ଭ କରି ମଟର ରେଲଗାଡ଼ି ଏପରିକି ଟ୍ରକ ଜିପ ପର୍ଯ୍ୟନ୍ତ ବାରନ୍ତି ନାହିଁ । କ୍ରୋଧ, ଭୟ, ହିଂସା, ମାନ ଅଭିମାନ ସବୁ ତ୍ୟାଗ କରିଥାନ୍ତି । ବର୍ଷ ଟା ସାରା ପିଲାଙ୍କ ସଙ୍ଗରେ ବକର ବକର ନ ହୋଇ ଉପଯୁକ୍ତ ସମୟରେ ସେମାନେ ପହ୍ନନଅନ୍ତି । ଗାଁ ମଫସଲରୁ ବାହାରିବାକୁ ହେଲେ ଶକ୍ତି ମୁତାବକ ଚୂଡ଼ା ଚାଉଳ ଓ ସୁଟକେଶ ଧରି ବନ୍ଧୁବାନ୍ଧବ ସଂଗାଳ ଆସନ୍ତି । ମୋଟାମୋଟି ଦେଖିଲେ ପରୀକ୍ଷା ସମୟରେ ଦେଶବାସୀ ସମସ୍ତେ ତତ୍ପର । ଯାହାର ପୁଅ ଝିଅ ନାହିଁ ସେମାନେ ବନ୍ଧୁ ବାନ୍ଧବଙ୍କ ପାଇଁ ମଧ୍ୟ ଲାଗି ପଡ଼ିଥାନ୍ତି ।

ମଣିଷ କାହିଁକି ପାଠ ପଢ଼େ, ସ୍କୁଲ କଲେଜକୁ ଆସେ ସେ ବିଷୟରେ ନାନା ମୁନି ନାନା ମତ ଦିଅନ୍ତି । ପଣ୍ଡିତେ ଶ୍ଳୋକ ବୋଲନ୍ତି "ବିଦ୍ୟା ବିହୀନଃ ପଶୁଃ" । ପଶୁତ୍ୱର ବିନାଶପାଇଁ ମଣିଷ ପାଠ ପଢ଼େ । ଗରିବ ବାପ ମା କହନ୍ତି ଦି ପଇସା ରୋଜଗାରପାଇଁ ତାଙ୍କ ପୁଅ କଲେଜକୁ ଯାଏ । ପୁଞ୍ଜିପତି ଓ ବ୍ୟବସାୟୀଙ୍କର ପାଠ ପଢ଼ିବା ଏକ ସଉକ ବା ଖିଆଲ । ବିପଦ ଇଂରାଜୀ କହିବା ବା ଇଂରାଜୀ ଫଖ୍ୟା ଚଳି ଶିଖିବା ସେମାନଙ୍କର ଲକ୍ଷ୍ୟ । ନେତାଏ କହନ୍ତି, ମାତୃଭୂମିର ସମ୍ମାନ ରକ୍ଷା କରିବା ହେଉଛି ଶିକ୍ଷାର ମୂଳ ଉଦ୍ଦେଶ୍ୟ ।

ଛାତ୍ରମାନେ କନ୍ତୁ ଧରି ନେଇଥାନ୍ତି ସେମାନେ ପାଠ ପଢ଼ନ୍ତି କେବଳ ପରୀକ୍ଷା ଦେବାପାଇଁ । ଏସବୁ ଆମ ଦେଶର ଦୃଷ୍ଟିଭଙ୍ଗୀ । ପ୍ରକୃତରେ ସମସ୍ତଙ୍କ ଦୃଷ୍ଟିକୋଣ ଠିକ୍ । ଦେଶର ବର୍ତ୍ତମାନ ପରିସ୍ଥିତିରେ ଛାତ୍ରର ବୁଦ୍ଧିବୃତ୍ତି ବା ଜ୍ଞାନଗରିମାର ଏକମାତ୍ର ମାପକାଠି ହେଲା ପରୀକ୍ଷା । ଛାତ୍ରଟି ଯେତେ ବୋକା ବା ବୁଦ୍ଧୁ ହେଲେ ମଧ୍ୟ ତାକୁ ପରୀକ୍ଷାରେ ପାସ କରିବାକୁ ହେବ । ତେଣୁ ସେ କନେ-ବନେ-କଉଶଳେ ଯାବତୀୟ ଉପାୟ ଅବଲମ୍ବନ କରି ଶ୍ରେଣୀ ଡେଇଁବାକୁ ଉଦ୍ୟମ କରେ ।

ସେଥିପାଇଁ ସ୍କୁଲ କଲେଜରେ ନାମ ଲେଖାଉ ଲେଖାଉ ଛାତ୍ର ୫।୧୦ ବର୍ଷର ପରୀକ୍ଷାପ୍ରଶ୍ନ ଯୋଗାଡ଼ କରେ । ଶିକ୍ଷକ ପଢ଼ାଉଥିଲାବେଳେ ଯେଉଁ-ଗୁଡ଼ିକ ପରୀକ୍ଷା ଦୃଷ୍ଟିରୁ ଦରକାରୀ ବୋଲି କୁହନ୍ତି ସେଗୁଡ଼ିକ ଅତି ଯତ୍ନ-ସହକାରେ ସେ ଟିପିନିଏ । ଶିକ୍ଷକ ମଧ୍ୟ ସିଲାବସ ଯେତେ ନ ଦେଖନ୍ତି ପରୀକ୍ଷା ପ୍ରଶ୍ନକୁ ଆଖି ଆଗରେ ରଖି ପାଠ ପଢ଼ାନ୍ତି । କାରଣ ସେ ଜାଣନ୍ତି ପରୀକ୍ଷାର ଫଳାଫଳ ଅନୁସାରେ ପାଣ୍ଡିତ୍ୟର ସୂଚନା ମିଳିବ । ତା'ଛଡ଼ା ଶ୍ରେଣୀରେ ଶାନ୍ତିରକ୍ଷା କରିବାର ଏକମାତ୍ର କୌଶଳ ହେଲା ପରୀକ୍ଷାଭୟ । ଛାତ୍ର ଯେତେ ଦୁଷ୍ଟ ବା ଅନ୍ୟମନସ୍କ ହେଲେ ମଧ୍ୟ ପରୀକ୍ଷା ସଂକ୍ରାନ୍ତୀୟ ଯାବତୀୟ ବିଷୟ ବଡ଼ ଆଗ୍ରହ ସହକାରେ ଟିପିନିଏ । ପରୀକ୍ଷା ନାମ ଉଚ୍ଚାରଣ କଲେ ଶ୍ରେଣୀରେ ଘୁମାଉଥିବା ଛାତ୍ରର ଘୁମ ଭାଙ୍ଗିଯାଏ । ଗବାକ୍ଷରନ୍ଧ୍ରରେ ପ୍ରାକୃତିକ ଦୃଶ୍ୟ ଉପଭୋଗ କରୁଥିବା କଳାପ୍ରେମୀ ଛାତ୍ରର ଆଖି କଳାପଟାଆଡ଼େ ବୁଲିପଡ଼େ । ପାଠ୍ୟବସ୍ତୁକୁ ମନ ଆକର୍ଷଣ କରିବାର ଏକ ଅମୋଘ କୌଶଳ ହେଲା ପରୀକ୍ଷା ଚମକ ।

କେବେ କଲେଜ ପରୀକ୍ଷାକୁ ଲକ୍ଷ୍ୟ କରିଛନ୍ତି ? ନ କରିଥିଲେ ମାର୍ଚ୍ଚମାସ ବେଳକୁ କଟକଆଡ଼େ ଆସିବେ । ସେତେବେଳକୁ ବସନ୍ତର ବିଦାୟ ବେଳ । ଗଛନ୍ତି ପ୍ରତ୍ୟେକ ପତ୍ର ଝଡ଼ୁଥିବ । ପୁରୁଣା ଛାତ୍ରମାନେ ପୁଣି ନୂଆ ହେବାକୁ ପରୀକ୍ଷା ପାଇଁ ସଜବାଜ ହେଉଥିବେ । ଛାତ୍ରାବାସରେ ପାହାନ୍ତା ବେଳକୁ ପ୍ରତିଘରେ ବତିଆଳି ଉତ୍ସବ । କେଉଁ ଘରେ ଆଲାର୍ମ ଗର୍ଜିଲାଣି ତ କାହାଘରେ ଟ୍ରାନ୍‌ଜିଷ୍ଟର ସେଁ ସେଁ ହେଲାଣି । କିଏ ସିନେମା ସଙ୍ଗୀତ ବୋଲି ନାଚ ଛଡ଼ଉଛି ତ କିଏ ପୁଣି ସ୍ମୃତିଶକ୍ତିକୁ ସଚେତନ କରିବାପାଇଁ କଇଞ୍ଚିମାର୍କା ସିଗାରେଟର ଧୂମ କୁଣ୍ଡଳୀ ସୃଷ୍ଟି କଲାଣି । ଯାହାବେଳେ ଯାହାତଳେ । ପ୍ରାଣାୟାମଠାରୁ ଆରମ୍ଭ କରି ଗୁଡ଼ାଖୁଘଷା ପର୍ଯ୍ୟନ୍ତ ଯାବତୀୟ କୌଶଳ ପ୍ରୟୋଗ କରି ନିଦ୍ରାଦେବୀଙ୍କ ମାୟାଜାଲରୁ ମୁକୁଳିବାକୁ ହୁଏ ।

ତା' ପରଦିନ ସକାଳେ ସେନାବାହିନୀ ପରି ଛାତ୍ରଦଳ କଲେଜ ଆଡ଼କୁ ମ୍ୟୁନିସିପାଲଟି ରାସ୍ତାର ଖାଲଢ଼ିପ ନ ମାନି ଛୁଟିଆସନ୍ତି । ଟାଉନବସ, ସାଇକେଲ ରିକ୍‌ସା ପ୍ରଭୃତି ବିବିଧ ଯାନରେ ଘଣ୍ଟାବାଜିବା ଆଗରୁ ସମସ୍ତେ ଆସି ପହଞ୍ଚନ୍ତି । କିଏ ରିକ୍‌ସାରେ ଆସୁ ଆସୁ ଟିପାଖାତା ଓଲଟାଇ ନେଉଥାଏ । କିଏ ଟାଉନବସରେ ଫୁଲ୍‌-ଫୁଲ୍‌ ସାଙ୍ଗଙ୍କ ସଙ୍ଗରେ ପ୍ରଶ୍ନ ଆଲୋଚନା ଚଳାଉଥାଏ । ଆଉ କେତେକ ସାଇକଲରେ ବେଦମ୍‌ ହୋଇ ଧାଇଁ ଆସୁଥିଲାବେଳେ ସେମାନଙ୍କ ମାନସପଟରେ ଖାଲି ପ୍ରଶ୍ନ ଗୁଡ଼ିକ ଫୁଲିସି ଉଠୁଥାଏ ।

ପରୀକ୍ଷା ଘଣ୍ଟା ବାଜିବା ଆଗରୁ ଅଧ୍ୟାପକ ମଧ୍ୟ ପ୍ରଶ୍ନପତ୍ର ଧରି ଆସନ୍ତି । ସଙ୍ଗରେ ଯୋଡ଼ାଏ ଚତୁର୍ଥ ଶ୍ରେଣୀ କର୍ମଚାରୀ । ଜଣେ ଧରିଥାନ୍ତି ଖାତା ଓ ବ୍ଲଟିଂ ପେପର, ଆଉ ଜଣେ ଧରିଥାନ୍ତି ମାଠିଆ ଓ ଛୁଞ୍ଚିସୂତା । ୧୫ ମିନଟ୍ ପୂର୍ବରୁ ସତର୍କ କରିବାପାଇଁ ଘଣ୍ଟା ବାଜିଲା । ତଥାପି ପରୀକ୍ଷାର୍ଥୀଙ୍କ ପଢ଼ା ଚାଲିଛି । ମୁହୂର୍ତ୍ତକର ମୂଲ୍ୟ କେତେ ବର୍ତ୍ତମାନ ଛାତ୍ରସମାଜକୁ ବୁଝାଇବା ଦରକାର ନାହିଁ । ଷ୍ଟାମୀସ୍ଥ ଦେବଦେବୀଙ୍କ ନାମ ଉଚ୍ଚାରଣ କରୁ କରୁ ଖାତା ଉପରେ ସମସ୍ତେ ଆଖି ବୁଲେଇ ନେଉଛନ୍ତି । ପରୀକ୍ଷା ପ୍ରଶ୍ନ ଧରି ତରୁଣ ଅଧ୍ୟାପକ ଟହଲ ମାରୁଛନ୍ତି; ଆଜି ବଡ଼ ନିଦକରେ । ସିଗାରେଟକୁ ଟାଣି ଟାଣି ସୂଚନା ଦେଉଥାନ୍ତି ଜୀବନରେ ବନେହେଲେ ଯେପରି ସେ ପରୀକ୍ଷାକୁ ଉତ୍ତର ନାହାନ୍ତି । ମଝିରେ ମଝିରେ ହାତଘଣ୍ଟାକୁ ଅନାଇ ଚିତ୍କାର କରୁଥାନ୍ତି 'ବନ୍ଦିପତ୍ର ବାହାରକୁ ନିଅ ବେଳ ହେଲଣି ।' ଶ୍ରେଣୀର ସେହି ଦୁଷ୍ଟ ଛାତ୍ରଟି ମଧ୍ୟ ଏପର୍ଯ୍ୟନ୍ତ ତା'ର ବହି ଛାଡ଼ିବାକୁ ନାରାଜ । ସାର୍ ସିଗାରେଟର ଶେଷ ଢୋକଟି ଟାଣିନେଲା ପରି ସେ ଶେଷଥର ପାଇଁ ସାରାଂଶ ମନେ ରଖି ନେଉଛି । ସାର୍ ପୁଣି ସିଗାରେଟ ଖାଇବେ କନ୍ତୁ ସେ ଆଉ ତା'ର ଖାତା ଦେଖିପାରିବନି ।

ବର୍ତ୍ତମାନ ଚଟ୍ଟା ପିଅନଟି ଖାତା ବାଣ୍ଟିଦେଲା । ଅନେକ ସେମାନଙ୍କ ଖାତାରେ ଉପର ହିବାଚ 'ଓଁ' ବା ମା' ଲେଖିଲେ । ଯାହାର ଯେମିତି ବିଶ୍ୱାସ । କିଏ ଗଳାରୁ ସିନ୍ଦୂର ଟିକିଏ ଆଣି ଖାତା କଣରେ ମାରିଲା । ତା ପରେ ପ୍ରଶ୍ନପତ୍ର ବଣ୍ଟାହେଲା । ସମସ୍ତେ ପଢ଼ିବା ପୂର୍ବରୁ ମୁଣ୍ଡରେ ମାରିନେଲେ ।

ତା'ପରେ ଯେ ଯାହାର ଲେଖାରେ ଲାଗିଗଲେ । କାହାର କାହା ପ୍ରତି ନଜର ନାହିଁ । କଡ଼ା ନକ୍ଷତ୍ର । ସେଥିପାଇଁ ଫୁସ୍‌ଫୁସ୍ ଟୁସ୍‌ଟାପ ସବୁ ବନ୍ଦ

ତଥାପି କେତେକ ପିଲା ସଂକ୍ଷେପରେ ଉତ୍ତର ଲେଖି ପାଣି ମଗେଇଲେଣି । ବାରମ୍ବାର ପାଣି ପିଇ ପରୀକ୍ଷା କଲେ ସ୍ୱାସ୍ଥ୍ୟ ଠିକ ରହେ । ସ୍ୱାସ୍ଥ୍ୟରକ୍ଷାର ନିୟମ ସେମାନେ ପରୀକ୍ଷାହଲରେ ମଧ୍ୟ ମନେ ରଖିଛନ୍ତି । ଯେକୌଣସି ଅସ୍ୱାଭାବିକ ପରିସ୍ଥିତିରେ ମୃତ୍ତିଷ୍କକୁ ସ୍ୱାଭାବିକ ରଖି ନିୟମ କାନୁନ୍‌କୁ ମନେ ପକାଇ ପାରିବା ହେଲା ଆଇ. ଏ. ଏସ୍. ହେବାର ଏକ ପ୍ରଧାନ ଲକ୍ଷଣ ।

୧୨ଟା ବାଜିଲା । ହଠାତ୍ ହଲରେ ଗୋଟିଏ ଆଲାର୍ମ ଘଣ୍ଟା ବାଜି ଉଠିଲା । ସମସ୍ତେ ଚମକି ଉଠିଲେ । ଯେଉଁମାନଙ୍କ ଉତ୍ତର ସରି ଆସୁଥିଲା ସେମାନେ ଟିକଏ ମୁଣ୍ଡ କୁହଁସା ମାରି ପୁଣି ଲେଖାରେ ମନଦେଲେ । ଯାହାର ଆଲାର୍ମ ଗର୍ଜି ଉଠିଲା ସେ ବଡ଼ ଲଜ୍ଜିତ ହୋଇ ତରବରରେ ତାକୁ ବନ୍ଦ କଲା । ସମସ୍ତେ ଜାଣିଲେ ସେ କାଲି ରାତିସାରା ଶୋଇନାହିଁ । ୧୧ଟାରେ ବଡ଼ ନିକଟ ନିଭିଲା । ଘଣ୍ଟାଏ ଶୋଇଲା ପରେ ସେ ପୁଣି ମହମବତି ଲଗାଇଛି । ସେ ହେଉଛନ୍ତି ଜଣେ ଛାତ୍ରନେତା । ପରୀକ୍ଷା ଘୁଞ୍ଚାଇବା ପାଇଁ ସେ ଅଧ୍ୟକ୍ଷଙ୍କଠାରୁ ଆରମ୍ଭ କରି କୁଳପତିଙ୍କୁ ମଧ୍ୟ ମୁଲାକାତ୍ କରିଛନ୍ତି । ଛାତ୍ରଙ୍କର ଧାରଣା ସେ ତାଙ୍କର କାହାକୁ ଭୟ ନାହିଁ । ନବାବ ପୁଅକୁ ସେ ଜବାବ ଦେଇପାରନ୍ତି । ଦେଶମାତୃକାର ଡାକ କେବଳ ଏଇମାନେ ଶୁଣିବେ । ଦରକାର ପଡ଼ିଲେ ଜୀବନକୁ ପାଣି ଛଡ଼ାଇ ପାଣିକୁ ଡେଇଁବେ । ଭବିଷ୍ୟତର ନେତୃତ୍ୱ ଏମାନଙ୍କ ଭାଗ୍ୟରେ । ପିଲାବେଳୁ ତାମସା ଦେଇ, ଧୋତି ପିନ୍ଧି ଜୀବନ୍ତ ନରକଙ୍କାଳ ସାଜି ପରୀକ୍ଷାରେ ପ୍ରଥମ ହେଲେ କଣ ହେବ ? ଖାଲି ସାଇକଲ ଚଲାଇ ଏମାନେ ମ୍ୟୁନିସିପାଲିଟି ରାସ୍ତାର ଖାଲଢ଼ିପ ଗଣିବେ । ସେହି ଛାତ୍ରନେତା ମଧ୍ୟ କାଲି ପରୀକ୍ଷା ଉଦ୍ଦେଶ୍ୟରେ ମହମବତି ଜାଳିଛନ୍ତି ।

ପରୀକ୍ଷା ସରିବାକୁ ଆଉ ୧୫ ମିନିଟ ବାକି । ଛୁଞ୍ଚ ସୂତା ଧରି ପିଅନ ଆସିଲା । ଅନେକ ପିଲା ଅନୁରୋଧ କଲେ ଆଉ ମିନିଟିଏ ଅପେକ୍ଷା କରିବାକୁ । ପିଅନ କିନ୍ତୁ କାହା କଥା ଶୁଣିଲା ନାହିଁ । ପିଲାଏ ସେମିତି ହେବେ । ଆଜକୁ ୩୦ ବର୍ଷ ହେଲା ସେ ବୃକଶୀ କଲାଣି । ତାଙ୍କ ବାପାକୁ ସେ ପରୀକ୍ଷା ଦେବାର ଦେଖିଛି । ଶେଷ ମୁହୂର୍ତ୍ତରେ ମିନିଟିଏ ଅଧିକା ଲେଖିବାପାଇଁ ସମସ୍ତେ ସେମିତି ଅନୁରୋଧ କରନ୍ତି ।

ଘଣ୍ଟା ବାଜିଲା । ଅଧ୍ୟାପକ ଖାତା ସଂଗ୍ରହ କଲେ । ବାକ୍ୟଟି ସମାପ୍ତ ହେବାପାଇଁ କେତେକ ଅନୁରୋଧ କଲେ ! ଅଧ୍ୟାପକ ମିନିଟିଏ ଅପେକ୍ଷା

କଲେ । ବାକ୍ୟ ଶେଷ ହେଲା ନାହିଁ । ଶେଷରେ ଖାତା ଝିଙ୍କିନେଲେ । ପରୀକ୍ଷାର୍ଥୀ ବିକଳ ହୋଇ ଗୋଡ଼ାଇଲା ଖାଲି ଟିକଏ ଦେଖିବାକୁ ଖାତାର ଅତିରିକ୍ତ ପୃଷ୍ଠଗୁଡ଼ିକ ଯଥାସ୍ଥାନରେ ଯଥାବିଧି ଗୁନ୍ଥା ହୋଇଛି କି ନାହିଁ । ଅଧ୍ୟାପକ ସେତେବେଳକୁ ଅନ୍ୟର ଖାତା ଝିଙ୍କିଲେଣି । ବନ୍ଧୁମାନେ ଖୁବ୍ ପାଟି କରି ଉତ୍ତର ଆଲୋଚନା କଲେଣି । ଶ୍ରେଣୀରେ ଯେ ପ୍ରଥମ ହୁଅନ୍ତି ତାଙ୍କୁ କାଲିଠାରୁ ଆମାଶୟ । ସେ ଛାତ୍ରାବାସର ପାଇଖାନାରେ ବସି ପରୀକ୍ଷାର ଶେଷ ଘଣ୍ଟା ଶୁଣୁଛନ୍ତି । ପ୍ରଥମ ହେବାର ଯୋଗ୍ୟତା ଥାଇ ବି ସେ ଅଙ୍କ ବର୍ଷେ ଅଟକିଲେ । ଆଜି ସମସ୍ତଙ୍କ ପାଇଁ ପରୀକ୍ଷା ଆସିଛି କାଲି ତାଙ୍କ ପାଇଁ ଆଉ ଥରେ ଆସିବ । ପରୀକ୍ଷାର ଶେଷ ନାହିଁ । ଫି ବର୍ଷ ସେ ଆସେ । ସେତିକ-ବେଳକୁ ଆମକୁ ଜାଗ୍ରତ ଓ ସାବଧାନ ହୋଇ ରହିବାକୁ ହେବ ।

---

# ଆମ ପରୀକ୍ଷାରେ ଦୋଷ ତ୍ରୁଟି



ଆମ ସ୍କୁଲ କଲେଜରେ ଯେ ପ୍ରକାର ପରୀକ୍ଷା ହେଉଛି, ସେଥିରେ ଅନେକ ଦୋଷତ୍ରୁଟି ରହିଛି । ଏକଥା ଅନେକ ଲୋକ କହୁଛନ୍ତି । ଏହେତୁ ନୂତନ ଅନେକ ସ୍କିମ ଦେଲ ମଧ୍ୟ କହୁଛନ୍ତି ; କିନ୍ତୁ ଦୁଃଖର କଥା ଏପର୍ଯ୍ୟନ୍ତ ଏହାର କିଛି ପ୍ରତିକାର ହୋଇନାହିଁ । ଛାତ୍ରମାନେ ଫି ବର୍ଷ ୫।୧୦ ବର୍ଷର ପ୍ରଶ୍ନପତ୍ର ଯୋଗାଡ଼ କରି ସେମାନଙ୍କର ଦୁଃଖ କଷ୍ଟ ମେଣ୍ଟାଉଛନ୍ତି । ସୌଭାଗ୍ୟକୁ ଏବେ ଏଥିପ୍ରତି କର୍ତ୍ତୃପକ୍ଷଙ୍କ ଦୃଷ୍ଟି ପଡ଼ିଛି । ହଠାତ କିଛି ଗୋଟିଏ ନିଷ୍ପତ୍ତି କରି ନେବାପାଇଁ ବିଶ୍ୱବିଦ୍ୟାଳୟମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି ।

କଥାଟିକୁ ତଳେଇ ଦେଖିବାକୁ କାହାର ବେଳ ନାହିଁ । ସେମାନେ ଭାବୁଛନ୍ତି ଏ ବିଷୟରେ ଏତେ ଆଲୋଚନା ବା ତର୍କବିତର୍କ ନ କରି ଆମେରିକା ପରି କେତେକ ଉନ୍ନତ ଦେଶମାନଙ୍କ ପନ୍ଥା ନକଲ କରିନେବା ବରଂ ଭଲ । ଆମେ ତ ସେମାନଙ୍କର ଚାଲିଚଳଣ, ଢଙ୍ଗରଙ୍ଗ କାନ୍ଧଟେକା ମୁଖଭଙ୍ଗୀ, ନାଳୀ ପ୍ୟାଣ୍ଟ ଜୋତା ଅଧିକେ ନକଲ କରି ସାରିଲୁଣି । ଖାଲି ଏତିକ ବାକି ଅଛି । ଏତିକ କରିନେଲେ ଆମେ ଆସ୍ତେ ଆସ୍ତେ ସେମାନଙ୍କ ପାଖକୁ ଲାଗି ଆସିବୁ । ସିଧାସଳଖ ସାହାଯ୍ୟ ବା ଭିକ୍ଷାମାଗି କୌଣସି ଜାତି ଉନ୍ନତି କରିନାହିଁ । ଜାପାନ ଜାତି ଅନୁକରଣପ୍ରିୟ । ନୂତନତା ଓ ଉତ୍କୃଷ୍ଟତାର ସନ୍ଧାନ କରିବାକୁ ଯାଇ ସେ ଅନୁକରଣ କରେ । ସେହି ଅନୁକରଣ ଭିତରେ ସେ ତାର ହାତର କଳାନ୍ତ ଓ ମାନସିକ ବିକାଶର ଏଭଳି ସୂଚନା ଦିଏ ଯେ ତା ଭିତରେ ଏକ ଅନନ୍ୟ ସ୍ୱତନ୍ତ୍ରତା ଫୁଟିଉଠେ । ସେହି କୌଶଳୀ ଜାପାନୀମାନଙ୍କର ଘଣ୍ଟା, କ୍ୟାମେରା, ଟ୍ରାଞ୍ଜିଷ୍ଟର ଓ ଖେଳନା ଦେଖିଲେ ସେ ଜାତିର ମୌଳିକତାକୁ ପ୍ରଶଂସା ନ କରି ରହିହୁଏ ନାହିଁ । ଆମେ ଆଜ ଯଦ

କୌଣସି ଏ ନୂଆ ପ୍ରଣାଳୀ ପ୍ରବର୍ତ୍ତନ କରିବା ତାହା ହେଲେ ତାକୁ ଠିକ ଏ ଆମ ଦେଶର ଅଭାବ ଅସୁବିଧା ଓ ପରିସ୍ଥିତିକୁ ଖାପ ଖୁଆଇଲା ଭଳି କରି ଗ୍ରହଣ କଲେ ତାହା ଜାତିର ପରିପୁଷ୍ଟି ଓ ସମୃଦ୍ଧିରେ ସାହାଯ୍ୟ କରିବ । ଚରିତ୍ରରେ ହଠାତ ଉଠିପଡ଼ିବା ପାଇଁ କୌଣସି ବ୍ୟକ୍ତିବିଶେଷର ଖିଆଲ ଉପରେ ଯାହା ତାହା ଗ୍ରହଣ କରୁଥିଲେ ଆମକୁ ଅନୁତାପ କରିବାକୁ ହେବ । ବସ୍ତୁ-ବଳୁରେ ଦୋଷ ରହିଲେ ଧାନଗଛ ଉପୁଡ଼ିବେ ଓ ବାଳୁଙ୍ଗାମାନେ ପରିପୁଷ୍ଟ ହୋଇ ଦେଶର ଶୋଷଣବର୍ଦ୍ଧନ କରିବେ । ଭବିଷ୍ୟତର ଉପଯୁକ୍ତ ବଂଶଧରମାନଙ୍କୁ ବାଟ୍ଟ ବାଟରେ ଚଳାଇବା ପାଇଁ ଏହି ପରୀକ୍ଷା ହେଲା ଏକମାତ୍ର ପନ୍ଥା । ଏଥିରେ ଯେ ଶତକଡ଼ା ୮୦ ବା ୯୦ ରଖିବ ସେ ଉତ୍ସାହିତ ହୋଇ କ୍ରମୋନ୍ନତ କରି ଲାଗିବ, ଯେ ଶତକଡ଼ା ୩୦ ରଖି ନ ପାରି ପଛେଇବ ସେ ହତୋତ୍ସାହ ଓ ନୈରାଶ୍ୟରେ ସାରା ଜୀବନ ପାଇଁ ଭାଙ୍ଗିପଡ଼ିବ । ସେଥିପାଇଁ ଦୂରଦୃଷ୍ଟିସମ୍ପନ୍ନ ଶିକ୍ଷାବିତ୍‌ମାନେ ଅତି ସାବଧାନ ହୋଇ ଏକ ପନ୍ଥା ଗ୍ରହଣ କରିବା ଉଚିତ । ଏହିଭଳି ଏକ ଘଡ଼ିସନ୍ଧିବେଳେ ଆମ ପରୀକ୍ଷାର ଦୋଷତ୍ରୁଟି ଜନସାଧାରଣଙ୍କ ନଜରକୁ ଆସିବା ଉଚିତ ।

## ସ୍ମୃତିଶକ୍ତି ପରୀକ୍ଷା

ଆମ ଏ ପରୀକ୍ଷା ସମ୍ବନ୍ଧରେ ପ୍ରଥମ ଅଭିଯୋଗ ହେଲା ଯେ ସ୍ମୃତିଶକ୍ତି ପରୀକ୍ଷା । ଛାତ୍ର କେତେ ମନେରଖି ପାରୁଛି ଏଥିରେ କେବଳ ତାହାହିଁ ପରୀକ୍ଷା କରାଯାଏ । ଛାତ୍ରର ବୁଦ୍ଧିବୃତ୍ତି ଓ ସୃଜନଶୀଳତା କଳନା କରିବାର ସୁବିଧା ଏଥିରେ ନାହିଁ । ଫଳରେ ଅନେକ ବୁଦ୍ଧିମାନ ଓ ସୃଜନଶୀଳ ଛାତ୍ର ଉଚ୍ଚଶ୍ରେଣୀ ନ ପାଉଥିବାରୁ ସରକାରୀ ବୃତ୍ତି ଓ ସାହାଯ୍ୟରୁ ବଂଚିତ ହୋଇ ପୋଥିପତ୍ରରେ ଡୋରିବାନ୍ଧି ମାଟି ହାଣନ୍ତି ବା ଗୋରୁ ଚରାନ୍ତି । ଏଭଳି ପ୍ରଥମ ଶ୍ରେଣୀ ନାଗରିକଙ୍କୁ ପଛକୁ ଠେଲିଦେଇ ବର୍ଷକୁ ବର୍ଷ ଆମେ ଏକ ଅପରାଧ କରିବା ସଙ୍ଗେ ସଙ୍ଗେ ଦେଶ କ୍ରମାଗତ ଅବନତି କରି ଲାଗିଛୁ ।

## ପ୍ରଶ୍ନପତ୍ର ବଛାବଛି

ପୂର୍ବ ପ୍ରଶ୍ନକୁ ନକଲ କରି ଏକ ଧାରାବାହିକ ରୀତିରେ ଆମ୍ଭେ ବର୍ଷକୁ ବର୍ଷ ପ୍ରଶ୍ନ କରି ଲାଗିଛୁ । ପ୍ରଶ୍ନପତ୍ରରେ କୌଣସି ବିଶେଷ ପରିବର୍ତ୍ତନ ପରିଲକ୍ଷିତ ହେଲେ ପ୍ରଶ୍ନକର୍ତ୍ତା ବଦଳି ଯାଉଛନ୍ତି । ଏପରିକି ଗତବର୍ଷର ପ୍ରଶ୍ନ ପୁନରାବୃତ୍ତି ହେଲେ କିମ୍ବା କିଛି ନୂତନତ୍ୱ ଦେଖାଗଲେ ପରୀକ୍ଷା ବର୍ଜନ ପରି ଅସ୍ୱାଭାବିକ ପରିସ୍ଥିତି ସୃଷ୍ଟିତ ; ଏ ପ୍ରକାର ପ୍ରଶ୍ନ କଲେ କେତେକ ବିଷୟ ସବୁବର୍ଷ

ପାଇଁ ଗୁରୁତ୍ୱପୂର୍ଣ୍ଣ ହୋଇ ରହେ । ସମୁଦାୟ ପାଠ୍ୟବସ୍ତୁ ଉପରେ ପ୍ରଶ୍ନ ହୋଇ ପାରେ ନାହିଁ । ପରୀକ୍ଷା ବେଳକୁ ଛାତ୍ର ଓ ଶିକ୍ଷକମାନେ ବଛାବଛି କାମରେ ବ୍ୟସ୍ତ ହୋଇ ଉଠନ୍ତି । ଯାହାର ଅନୁମାନ ଯେତେ ଠିକ୍ ହୁଏ ସେ ସେତେ ଉପରକୁ ଉଠେ । ତେଣୁ ଏ ପରୀକ୍ଷାରେ ଅଧିକା ନମ୍ବର ରଖିଥିବା ପିଲା କମ ନମ୍ବର ରଖିଥିବା ପିଲାଠାରୁ ସବୁବେଳେ ଉତ୍କୃଷ୍ଟ ହୋଇ ନପାରେ ।

## ଶାରୀରିକ ଅସୁସ୍ଥତା ଏକ ଅଯୋଗ୍ୟତା

ନିୟମିତ ଶ୍ରେଣୀରେ ଉପସ୍ଥିତ ରହି ଓ ପ୍ରଥମ ଶ୍ରେଣୀର ଯୋଗ୍ୟତା ଥାଇ ମଧ୍ୟ କେତେକ ଛାତ୍ର ଏକ ଆକସ୍ମିକ ଅସୁସ୍ଥତା ଫଳରେ ଶେଷ ପରୀକ୍ଷା ଦେଇ ପାରନ୍ତି ନାହିଁ । ଏଥିପାଇଁ କୌଣସି ସ୍ୱତନ୍ତ୍ର ବ୍ୟବସ୍ଥା ନ ଥିବାରୁ ସେମାନେ ବର୍ଷେ ଅଟକନ୍ତି । ଏ ଦେଶରେ କାହାର ସୁପାରିଶ ବା ଅନୁମୋଦନ ନିର୍ଭର ଯୋଗ୍ୟ ନୁହେଁ । କାରଣ ଆମେ ଧରିନେଇଛୁ, ଏଠି ସମସ୍ତେ ଅସାଧୁ, କେବଳ କଡ଼ା ନିୟମ କାନୁନ ଫଳରେ ଦେଶରୁ ଦୁର୍ନୀତି ଓ ଅସାଧୁତା ନିର୍ମୂଳ ହୋଇଯିବ । ଯେପରିକି ଆମେ ଚଳାଉଥିବା ପରୀକ୍ଷାଟି ସାଧୁ ଓ ସଚ୍ଚୋଟ ଉପାୟରେ ଚାଲିଛି । ଋକ୍ଷା, ଏହି ପରୀକ୍ଷା ସମ୍ପର୍କୀୟ ଆଇନକାନୁନ ଆଇନ କଲେଜର ପାଠ୍ୟବସ୍ତୁ ନୁହେଁ । ହେବାକୁ ବା କେତେବେଳ ? ଏଥିରେ ତ ଅନେକ ମାମଲା ଚାଲିଲଣି ।

## ବ୍ୟାପକ ଅଧ୍ୟୟନ ସୀମିତ

ଏ ଧରଣର ପରୀକ୍ଷାରେ ଶତକଡ଼ା ୬୦।୭୦ ରଖିବାକୁ ହେଲେ ଅନେକ ଉପାଦେୟ ପୁସ୍ତକ ଅଧ୍ୟୟନ କରି ଏକ ବିଶ୍ଳେଷଣାତ୍ମକ ଆଲୋଚନା କରିବାର ଜରୁରୀ ଆବଶ୍ୟକତା ନାହିଁ । କ୍ଲାସନୋଟ୍ ଯଥେଷ୍ଟ । ଏତେ ପୁସ୍ତକ ଅଧ୍ୟୟନ କରି ଛାତ୍ର ବିଷୟବସ୍ତୁକୁ ସ୍ମୃତିପଟରେ ସଜାଡ଼ି ରଖିବାକୁ ଦୁଃସାଧ୍ୟ ମନେକରେ । ପ୍ରଶ୍ନପତ୍ର ସମସ୍ୟାମୂଳକ ହୋଇ ନ ଥିବାରୁ ପୁସ୍ତକାଳୟରେ ପୁସ୍ତକ ଘାଣ୍ଟିବାର ଆବଶ୍ୟକତା ନ ଥାଏ ।

## ଅବାଧ ଅସାଧୁତା ଓ ଅସଦୁପାୟ

ସାମାଜିକ ପରିସ୍ଥିତିରୁ ହିଁ ଏହା ଉପୁଜିଥାଏ । କୌଣସି ପରୀକ୍ଷା ପ୍ରଣାଳୀ ଏହାର ନିରାକରଣ କରିପାରିବ ନାହିଁ । ତେବେ କେତେକ ପରୀକ୍ଷା ପ୍ରଣାଳୀ ଏହାକୁ ସହଜ ଓ ସୁବିଧାଜନକ କରିପାରେ । ଯୁଗେ ଯୁଗେ ଏହା ରହିଛି । ଆଗେ ଅଳ୍ପ ଥିଲା ଏବେ ବେଶୀ ହୋଇଛି । ଆଜିର ଏହା ଏକ ଗୁରୁତର

ଅଧର୍ମ ବା ଅପରାଧ ଥିଲା । ଏବେ ଏହା ବ୍ୟାପକ ହୋଇ ଉଠିବାରୁ ସମାଜର ଦେହସହା ହୋଇ ଉଠୁଛି । ଏଥିପାଇଁ ଦଣ୍ଡବିଧାନ କୋହଳ କରିବା ପାଇଁ ସ୍ଥାନେ ସ୍ଥାନେ ଜନମତ ସୃଷ୍ଟି ହେଲାଣି ।

## ଜ୍ଞାନର ମାପକାଠି ନୁହେଁ

ବର୍ଷକରେ କମ୍ବା ୨ ବର୍ଷରେ ଥରେ ପରୀକ୍ଷା । ସେତିକବେଳକୁ ସୁନ୍ଦର ସୁନ୍ଦର ଅକ୍ଷରରେ ଯେ ପୁରି ପୁରି ଲେଖିପାରିବ ତାର୍ କଦରବାର । ଅବଶ୍ୟ ଜୀବନରେ ଏ କୌଶଳର ଆବଶ୍ୟକତା ଅଛି । ଯେଉଁମାନେ ଏ ବିଦ୍ୟାରେ ଅପାରଗ ଅଥଚ ସେମାନଙ୍କର ଜ୍ଞାନର ଗଭୀରତା ଅଧିକ, ସେମାନେ ଏ ପରୀକ୍ଷାରେ ପଛେଇଯାନ୍ତି । ସାରା ଜୀବନରେ ମଧ୍ୟ ସେମାନେ ଏଥିପାଇଁ ନିନ୍ଦିତ ବା ଅବହେଳିତ ହୁଅନ୍ତି । ଆତ୍ମଗ୍ଲାନି ବା ନୈରାଶ୍ୟରେ ଜର୍ଜ୍ଜରିତ ହୋଇ ଆତ୍ମ-ବିସର୍ଜନ ପର୍ଯ୍ୟନ୍ତ କରନ୍ତି ।

## ବିଶ୍ୱବିଦ୍ୟାଳୟରେ ପରୀକ୍ଷା ବେପାର

ଏମିତି ପରୀକ୍ଷା ହେଉଥିବାରୁ ସମୁଦାୟ ବିଶ୍ୱବିଦ୍ୟାଳୟ ସାରାବର୍ଷ କେବଳ ପରୀକ୍ଷାରେ ବ୍ୟାପୃତ ରହେ । ସୁଦୂର ପ୍ରେସରେ ଲୁଚି ଲୁଚି ପ୍ରଶ୍ନ ଛପାଇବା, ପରୀକ୍ଷାଖାତା ବାନ୍ଧି ସଜାଡ଼ି କଲେଜକୁ ପଠାଇବା, ପରୀକ୍ଷକଙ୍କଠାରୁ ଖାତା ସଂଗ୍ରହ କରି ସୁଦୃଢ଼ କୋଠରୀରେ ଥାକ ଥାକ କରି ସଜାଡ଼ିବା, ଫେଲ ପିଲାଙ୍କୁ ପାଶ କରାଇବା ପାଇଁ ଅଧ୍ୟାପକମାନଙ୍କ ବୈଠକ ବାରମ୍ବାର ଡକାଇବା, ପରୀକ୍ଷାରୁ ଦୁର୍ନୀତି ନିର୍ମୂଳ କରିବାପାଇଁ କୋର୍ଟ କଚେରୀକୁ ଧାଇଁବାରେ ବିଶ୍ୱ ବିଦ୍ୟା-ଳୟର ଶକ୍ତି ସମୟ ଓ ଅର୍ଥ ବିପୁଳ ପରିମାଣରେ କ୍ଷୟ ହୁଏ । ତଥାପି ପରୀକ୍ଷା ବିଶ୍ୱବିଦ୍ୟାଳୟର ଏକମାତ୍ର ଆୟପନ୍ଥା, ବର୍ଷର ଯେ କୌଣସିଦିନ ବିଶ୍ୱବିଦ୍ୟା-ଳୟ ହତାକୁ ଗଲେ ସେଠାରେ ଦେଖିବାକୁ ମିଳେ ଯେ ଖାଲି ପରୀକ୍ଷା ବ୍ୟାପାର ଲାଗିଛି । କେଉଁଠି ପ୍ରଶ୍ନପତ୍ର ସଜଡ଼ା ହେଉଛି ତ କେଉଁଠି ପିଲାଏ ଫିସ ଦାଖଲ କରୁଛନ୍ତି, ଅନ୍ୟ କେଉଁଠି ଅଧ୍ୟାପକମାନେ ଛୁଟିନେଇ ଆସି ତାଙ୍କ ପରୀକ୍ଷା ସଂକ୍ରାନ୍ତୀୟ ପାରିଶ୍ରମିକ ପାଇବାପାଇଁ ଅନୁରୋଧ ବା ତର୍କ ବିତର୍କ କରୁଛନ୍ତି । ବିଶ୍ୱବିଦ୍ୟାଳୟ ଏମିତି ବ୍ୟସ୍ତ ବା ବ୍ୟାପୃତ ରହିବା ଫଳରେ ଶିକ୍ଷାର ମାନବୃଦ୍ଧି, ଉନ୍ନତ ଧରଣ ଶିକ୍ଷା ପ୍ରଣାଳୀ ବା ଉଚ୍ଚକୋଟୀର ଗବେଷଣା ପ୍ରତି ଧ୍ୟାନ ଦେବାକୁ ଅବସର ପାଉନାହିଁ ।

## ଦଶଦିନରେ ଛ'ଶହ ଖାତା

ଗତ ବର୍ଷ ଅନନ୍ତ [illegible] ଦ୍ରବ୍ୟ ବତଭ୍ୟାସ କରି କେତେ ଯତ୍ନରେ ପିଲା ପରୀକ୍ଷାହଲରେ ଖାତାରେ ଉତ୍ତର ଲେଖେ । ଆଗରୁ କଣ୍ଟ ସମସ୍ତ ଆଖି ଖୋଲି ଲେଖା ଆରମ୍ଭ କରିଥାଏ ତ ଦମେ ଆଖି ବୁଜି ଭୋଷିଥାଏ । ହଲରେ ଶେଷ ବାକ୍ୟଟି ସମାପ୍ତି କରିବା ପାଇଁ ନିରୀକ୍ଷକଙ୍କୁ କେତେ ନକୁଟି ହୋଇ କାକୁତିମିନତି କରେ । ସେହି ଖାତା ସବୁ ଦୁଇଶହକିଆ ବିଡ଼ା ହୋଇ ପରୀକ୍ଷକ ପାଖରେ ପହଞ୍ଚେ । ଏତକ ଖାତା ପ୍ରାୟ ୨୦ ଦିନରେ ତାଙ୍କର ଦେଖିବା କଥା । ବେଳେ ବେଳେ ବିଶ୍ୱବିଦ୍ୟାଳୟର ଅନୁକମ୍ପାରୁ ସେ ଏକାଧିକ ୩ଟି ପରୀକ୍ଷାର ଖାତା ପ୍ରାୟ ଏକ ସମୟରେ ଦେଖନ୍ତି । ଡାକ ବା ରେଳ ବିଭାଗର ଯାବତୀୟ ତତ୍ପରତା ସତ୍ତ୍ୱେ ଖାତା ପହଞ୍ଚିବାରେ ୪।୬ ଦିନ ଡେରି ହୋଇଥାଏ । ଖାତା ଦେଖା ପରେ ମିଶାଣ ଠିକଠାକ୍ କରିବା, ପ୍ରଧାନପରୀକ୍ଷକଙ୍କ ହୁକୁମ ଅନୁସାରେ ଅଦଳ ବଦଳ କରିବା ; ନମ୍ବର ଲେଖିବା ଓ ବିଡ଼ା ବାନ୍ଧିବା ଆଦିରେ ପ୍ରାୟ ୪।୬ ଦିନ ଗତ ହୁଏ । ମୋଟାମୋଟି ହିସାବ କଲେ ଛ'ଶହ ଖାତାକୁ ସେ ପ୍ରାୟ ଦଶଦିନ ଭିତରେ ଦେଖନ୍ତି, ସେଇ କେତେଦିନ ସ୍ତ୍ରୀ ସନ୍ତାନସନ୍ତତି ଓ ବନ୍ଧୁବାନ୍ଧବଙ୍କ ମାୟା ମମତା ଭୁଲି ଦି ପଇସା ପାଇବା ଆଶାରେ ସେ କେବଳ ଖାତା ଦେଖାରେ ମାତିଥାନ୍ତି । ପିଲାଙ୍କର ସେହି ସଯତ୍ନ ଲେଖା ମୋଟା ଖାତାଗୁଡ଼ିକ ଉକ୍ତ ପରୀକ୍ଷକର କିପରି ଦୃଷ୍ଟିକଟୁ ହେଉଥିବ ଆପଣ ଅନୁମାନ କରନ୍ତୁ । ସେଥିରେ ପୁଣି ସର୍ବସାଧାରଣ ତଥା ବିଜ୍ଞ ପ୍ରତିଷ୍ଠିତ ବ୍ୟକ୍ତିମାନେ ଧରି ନିଅନ୍ତି ଯେ ୩୬୨ ପାଇଲା ସେ ୩୬୧ ପାଇଥିବା ଛାତ୍ରଠାରୁ ଅଧିକ ବୁଦ୍ଧିମାନ ୩୬୨ ମାର୍କ । ସବୁ କ୍ଷେତ୍ରରେ ୩୬୧ ମାର୍କଠାରୁ ଅପେକ୍ଷାକୃତ ଅଧିକ ସୁବିଧା ହାସଲ କରି ଲଗିଥାଏ ।

## ପରୀକ୍ଷା ଧୁଆଁଅ

'ପରୀକ୍ଷା ଧୁଆଁଅ' ଆନ୍ଦୋଳନ ଶେଷ ପରୀକ୍ଷା ଆସିଲା ପରେ ପ୍ରାୟ ସବୁ ବର୍ଷ ଆସେ । ବର୍ଷ ଶେଷରେ ଭାଗ୍ୟ ନିର୍ଦ୍ଧାରକ ଶେଷ ପରୀକ୍ଷା । ଉତ୍ତମରୂପେ ସଜବାଜ ହୋଇ ବସିବା ପାଇଁ କାହାର ଇଚ୍ଛା ନ ହେବ ? ଧୁଆଁଅ ଆନ୍ଦୋଳନ ସମସ୍ତଙ୍କୁ ସୁହାଏ । କୁଳପତି ସୁନା ପିଲା ଭଳି କୁନିପିଲାଙ୍କର ନିର୍ଦ୍ଦେଶ ନ ମାନିଲେ ଛାତ୍ରନେତା, ରାଜନୀତିଜ୍ଞ, ବିଶିଷ୍ଟ ସମାଜସେବୀ ଏପରି କି ଜଗତଗୁରୁ ପର୍ଯ୍ୟନ୍ତ ଟେଲିଗ୍ରାମ୍ କରନ୍ତି । ମଧ୍ୟସ୍ଥମାନଙ୍କୁ ନ ମାନିଲେ ପରିସ୍ଥିତି ଭୟାନକ

ହୋଇଛନ୍ତି; ବେଶରେ ମରୁଡ଼ି, ମହାମାରୀର ପ୍ରାଦୁର୍ଭାବ । ତା ସାଙ୍ଗକୁ ନବ-କଳେବର ବା ନିର୍ବାଚନ ଆଦି ଅଛି । ତେଣୁ ପରୀକ୍ଷା ଯେତେ ଘୁଞ୍ଚୁଥିଲେ ବି ପୁଣି ଘୁଞ୍ଚାଅ ବୋଲି ବଡ଼ ବଡ଼ ଗୁହାରି ଦାବୀ କରନ୍ତି । ଫଳରେ ନାମଲେଖା ଘୁଞ୍ଚେ, ପଢ଼ାପଢ଼ି ଘୁଞ୍ଚେ । ପଢ଼ାପଢ଼ି ସରି ନ ଥିବାରୁ ପୁଣି ପରୀକ୍ଷା ଘୁଞ୍ଚେ— ସବୁ ଏହିପରି ଘୁଞ୍ଚିଇ ଘୁଞ୍ଚେଇ ଆମେ ଏ ଦେଶଟାକୁ ମଧ୍ୟ ପଛକୁ ଘୁଞ୍ଚାଇ-ବାକୁ କୁଣ୍ଠାବୋଧ କରୁନାହୁଁ ।

ନାମଲେଖା ଯେମିତି ହୁଏ ସେଥିରେ ପ୍ରାୟ ଏକମାସ ନଷ୍ଟ ହୁଏ । କଲେଜରେ ଦୁଇଟି ପରୀକ୍ଷା ହେଉଥିବାରୁ ସେଥିପାଇଁ ପ୍ରାୟ ଏକମାସ ପଢ଼ାପଢ଼ି ବନ୍ଦ ରହେ । ବିଶ୍ୱବିଦ୍ୟାଳୟର ପରୀକ୍ଷାପାଇଁ ସଜବାଜ ହେବାକୁ ପ୍ରାୟ ଏକମାସ ସମୟ ଦିଆଯାଏ । ପରୀକ୍ଷା ଛୁଟିଲେ ୧୫ଦିନ – ଅନ୍ୟାନ୍ୟ ପର୍ବପର୍ବାଣୀ ଓ ରବିବାର ଆଦି ପ୍ରାୟ ଅଢ଼େଇମାସ । ଏମିତି ହିସାବ କଲେ ଗୋଟେ ମୋଟ ୭ମାସ । ବର୍ଷକରେ ପିଲାଏ ପଢ଼ନ୍ତି (ଘେରାଉ ଓ ଆନ୍ଦୋଳନ ହେଉ ନ ଥିଲେ) ୫ମାସ । ଅନ୍ୟ ରକମରେ ହିସାବ କଲେ ପ୍ରକୃତ ପଢ଼ା ହୁଏ ଅଗଷ୍ଟରୁ ଫେବୃୟାରୀ ପର୍ଯ୍ୟନ୍ତ ପ୍ରାୟ ୭ ମାସ । ସେଥିରୁ ପୂଜା ଛୁଟି, ରବିବାର, ପର୍ବପର୍ବାଣୀ, ପରୀକ୍ଷା ବାବଦକୁ ଖୁବ୍ କମ୍‌ରେ ୨ମାସ କାଟି ଦିଅନ୍ତୁ । ବର୍ଷକରେ ୪।୫ ମାସ ପାଠପଢ଼ାଇ ଆମେ ଖାଲି ପରୀକ୍ଷା ଠିକଣା କରିବାରେ ଲାଗିଛୁ ।

## ପରୀକ୍ଷାର ପ୍ରଶ୍ନପତ୍ର

ଏ ସମ୍ବନ୍ଧୀୟ ଆଲୋଚନା ଗୋପନୀୟ । ତେବେ ଏତିକି ମାତ୍ର କୁହାଯାଇ ପାରେ ଯେ ପକ୍ଷପାତିତା ଓ ପ୍ରିୟାପ୍ରୀତି ତୋଷଣଠାରୁ ଦୂରରେ ରହିବା ପାଇଁ ବିଶ୍ୱବିଦ୍ୟାଳୟ ଏକ ସୁବନ୍ଦୋବସ୍ତ କରିଛି । ପଢ଼ାନ୍ତି ଜଣେ—ପ୍ରଶ୍ନ କରନ୍ତି ଆଉ ଜଣେ—ସଂଶୋଧନ କରନ୍ତି ସେମିତି ଆଉ କେତେଜଣ । ଛାପନ୍ତି ଜଣେ ଓ ଖାତା ଦେଖନ୍ତି ଆଉ ଜଣେ । ଏତେ ଶେଣାରେ ପାଣି ଉଠେ ଯେ ଶେଷରେ ପାଣି ଉଠେ କି ଆଉ କଣ ଉଠେ ଜାଣିବା ମୁସ୍କିଲ । ବର୍ଷ ଆରମ୍ଭରେ ୨୫୭ ଜଣ ପ୍ରଥମ ଶ୍ରେଣୀ ପିଲା ନାମ ଲେଖାଇ ବର୍ଷ ଶେଷରେ ସେଥିରୁ ପ୍ରାୟ ୮୦ଜଣ ଫେଲ ହୁଅନ୍ତି । ଏଥିରେ ଖାଲି ପଢ଼ୁଥିବା ବା ପଢ଼ାଉଥିବା ଲୋକକୁ ଦୋଷ ଦେଇ ଲାଭ କଣ ?

## ମୁନାଫାଖୋର ବ୍ୟବସାୟୀ

ଏମିତି ପରୀକ୍ଷା ହେଲେ ୫।୭ ବର୍ଷର ପ୍ରଶ୍ନପତ୍ର ଖାଲି ଗଡ଼ ଗୁଳିଥିବ । ପିଲାଏ ବର୍ଷକରେ ୪ ମାସ ପଢ଼ୁଥିବାରୁ ଖାଲି ଗୁଳିପକାଇ ସମ୍ଭାବିତ ପ୍ରଶ୍ନ

ଖୋଜ ବୁଲୁଥିବେ । ଫଳରେ ପରୀକ୍ଷା ଏକ ଯୌଥ କାରବାର ହୋଇ ଉଠିବ । ଏଥିରୁ ଅନେକ ମୁନାଫାଖୋର ବ୍ୟବସାୟୀ ମୁଣ୍ଡ ଟେକିବେ । ଗ୍ରନ୍ଥବନ୍ଧୁ ପ୍ରକାଶକ, ନୋଟ ଲେଖକ ଓ ଘରୋଇ ଶିକ୍ଷକମାନେ ଅସହାୟ ଛାତ୍ରମାନଙ୍କୁ ତଥାକଥିତ ସାହାଯ୍ୟ କରି ନିଜର ପୁଞ୍ଜି ବୃଦ୍ଧି କରିବେ । ଏ ବସ୍ତୁବସ୍ତୁ ମାମଲାରେ ଶିକ୍ଷାର ମାନଦଣ୍ଡ ମଳକୁ କମିଆସିବ ।

## ଧରାଧରି

ବର୍ଷକରେ ଥରେ ପରୀକ୍ଷା ହେଉଥିବାରୁ ଥରେ ଧରାଧରି କରିଦେଲେ ବର୍ଷକପାଇଁ ଫଳଲାଭ ହୁଏ । ଏହା ତ ସମସ୍ତଙ୍କ ଜାଣଶୁଣା ଓ ଆଖିଦେଖା କଥା—ଏହାକୁ ବେଶୀ ଖେଳେଇବା ଉଚିତ ନୁହେଁ । କଥାରେ ଅଛି ଲୋଭ ଓ ଲାଭ ଦେଖାଇଲେ ଦେବତା ବି ଲାଳେଇବେ ।

## ଗୋପନୀୟତା

ପରୀକ୍ଷା ସମ୍ବନ୍ଧୀୟ ଯାବତୀୟ କାରବାରରେ ( ଗସ୍ତଖର୍ଚ୍ଚ ବିଲରେ ମଧ୍ୟ ) ଗୋପନୀୟତାର ଛାପ ବସିଥାଏ । ପରୀକ୍ଷକର ନାମଠାରୁ ଆରମ୍ଭ କରି ପ୍ରଶ୍ନପତ୍ର ଛପାଛପି ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ଲୁଚିଛପି ଭାବେ ଚାଲେ । ଏ ବାବଦରେ ଅନେକ ଅର୍ଥ ମଧ୍ୟ ବରବାଦ ହୁଏ । ପ୍ରଶ୍ନପତ୍ର ଏକ ଅଜଣା ଅଶୁଣା ଓ ସୁଦୂର ପ୍ରେସରେ ଛପାଇ ଗୁଡାଏ ଅର୍ଥ ଅନାବଶ୍ୟକ କରିବାକୁ ହୁଏ । ସିଲ୍, ଇନ୍‌ସୁରାନ୍‌ସ ଓ ରେଜେଷ୍ଟ୍ରି ଆଦି କରି ଗୋପନୀୟତା ଓ ନିରାପତ୍ତାର ଏକ ପ୍ରହସନ କରାଯାଏ । ଦେଶରେ ନୈତିକ ବାତାବରଣ ନ ସୁଧୁରିଲେ ଏ ଗୋପନୀୟତାର ମୂଲ୍ୟ କିଛି ନାହିଁ । ଯେ ପାସ୍ କରିଛି ବା ଫେଲ୍ ହୋଇଛି ତା ଫଳରେ ଯଦି ଅଦଳବଦଳ ନ ହେବ ତାକୁ ଆଗରୁ ଜଣାଇବା କିଛି ଅପରାଧ ନୁହେଁ । ଏ ଗୋପନୀୟତା ଅଯଥା ବ୍ୟଗ୍ରତା ବଢାଏ ଓ ଦୁର୍ଦ୍ଦାନ୍ତ ବ୍ୟକ୍ତିଙ୍କୁ ଏକ ବୃଥା ଅସ୍ଫାଳନ ଦେଖାଏ ।

## ସିଲାବସ୍ ବଦଳ ଅର୍ଥହୀନ

ସିଲାବସ୍, ପରୀକ୍ଷା, ଶିକ୍ଷକ ଓ ଛାତ୍ର ଏମାନଙ୍କୁ ନେଇ ଶିକ୍ଷାର ମାନଦଣ୍ଡ ଗଢ଼ା । ଏଥିରୁ ଯେ କୌଣସି ଗୋଟିକର ମାନ ତଳକୁ ଖସିଲେ ସମୁଦାୟ ଶିକ୍ଷାର ମାନ ତଳକୁ ନିଶ୍ଚୟ ଖସିଆସିବ । ସବୁଗୁଡ଼ିକର ଏକାସଙ୍ଗେ

ପରିମାର୍ଜନା କରାଗଲେ ଶିକ୍ଷାର ଏକ ବଳିଷ୍ଠ ସଂସ୍କାର ହୋଇପାରିବ । ଏବେ କେତେକ ଚତୁର ବ୍ୟକ୍ତି ଅନ୍ୟ ସବୁକଥା ପାସୋରି ପକାଇ କେବଳ ସିଲାବସ ବଦଳାଇବାରେ ଲାଗିଛନ୍ତି । ଏହାର ପରିଣତି ଭୟାବହ । ପାକିସ୍ତାନ ପ୍ୟାଟେନ ଟ୍ୟାଙ୍କ ଦେବାର ପରିଣତି ଯାହା ହେଲା, ଯେ ଛୁରିରେ ପରିବା କାଟିବାକୁ ଡରେ ତାକୁ ତତ୍‌କ୍ଷଣ ଅସିଚାଳନା କରିବାକୁ କହିଲେ ସେ ଯାହା କରିବ ।

ପରୀକ୍ଷାପ୍ରଣାଳୀ ନ ବଦଳିଲେ ମାର୍କିନ ସିଲାବସ ଚଳାଇବା ଅର୍ଥହୀନ ହେବ । ଯେ କୌଣସି ସିଲାବସର ବିଷୟବସ୍ତୁକୁ ମନେରଖି ପରୀକ୍ଷା ଦେବା ଛାତ୍ରଙ୍କ କଥା ଦୂରେ ଥାଉ ଶିକ୍ଷକ ମଧ୍ୟ ଫେଲ୍ ହେବେ । ଫଳରେ ଧସ୍ତାଧସ୍ତି, ଛୁରାମାଡ଼, ଟେକା ଫୋପଡ଼ା ଓ କୋଠାଭଙ୍ଗା ଆଦି ବ୍ୟାପାର ଯୋଗ ବ୍ୟାପିଯିବ । ଆମେରିକା ଢାଞ୍ଚାରେ ସିଲାବସ୍ କଲେ ଆମେରିକା ଢାଞ୍ଚାରେ ପରୀକ୍ଷା ଓ ଶିକ୍ଷକ ଛାତ୍ର ସମ୍ପର୍କ ସବୁ ବଦଳାଇବା ଦରକାର । ଜାତିର ମେରୁଦଣ୍ଡ ଦୁର୍ବଳ ହୋଇ ଆସୁଥିଲାବେଳେ ସବୁ କଥାରେ ଆମେ ଖାଲି ଅଦଳବଦଳ ଓ ପରୀକ୍ଷା ଚଳେଇଲେ ପରିଣତି ବିଷମ ହେବ ।

---




ଆଜି ସବୁ କଥାରେ ଖାଲି ବ୍ୟାଙ୍କ । ବେକାରଙ୍କ ପାଇଁ ବ୍ୟାଙ୍କ, ବା ଲେଖାଳିଙ୍କ ପାଇଁ ବ୍ୟାଙ୍କ, ପରୀକ୍ଷାର୍ଥୀଙ୍କ ପାଇଁ, ରୋଗ ଭଲ କରିବାଠାରୁ ଆରମ୍ଭ କରି ମହକିଲ ଯୋଗାଡ଼ ପର୍ଯ୍ୟନ୍ତ ଖାଲି ବ୍ୟାଙ୍କ । ଆଗେ ଯେଉଁ ସୁପାରିଶ ଥିଲା ଏବେ ତାହା ବ୍ୟାଙ୍କରେ ପରିଣତ ହୋଇଛି । ସୁପାରିଶ କଥାଟା ତ ମନ୍ଦ ନ ଥିଲା । ଅଜଣା, ଅଶୁଣା ପ୍ରାର୍ଥୀଙ୍କ ଦକ୍ଷତା ଓ ବୁଦ୍ଧି ବୃତ୍ତିକୁ ବିଖ୍ୟାତ ଲୋକେ ସମର୍ଥନ କରି ଚିଠି ଖଣ୍ଡେ ଲେଖୁଥିଲେ । ସେହି ନାମଜାଦା ଲୋକଙ୍କ ଗୁଣଗରିମା, ସାଧୁତା, ବ୍ୟକ୍ତିତ୍ୱ ଓ ନିରପେକ୍ଷତାର ଭିତ୍ତି ଉପରେ ପ୍ରାର୍ଥୀ ଯୋଗ୍ୟ ବା ଅଯୋଗ୍ୟ ବିବେଚିତ ହେଉଥିଲା । ସ୍ୱଳ୍ପବିଶେଷରେ ଏବେ ବି ତାହା ଚାଲିଅଛି । ଏମିତି ସୁପାରିଶପତ୍ର ନ ପାଇଲେ ଆମେରିକାର ବିଶ୍ୱବିଦ୍ୟାଳୟରେ ଛାତ୍ର ନାମ ଲେଖାଇ ପାରେ ନାହିଁ । ସବୁ ଦେଶରେ ଓ ସବୁ ଯୁଗରେ ଏହା ପ୍ରଚଳିତ । ସୁପାରିଶପତ୍ର ବଳରେ ଅପରିଚିତ ପରିଚିତ ହୁଏ । ପାଞ୍ଚ ବା ଦଶ ମିନିଟ୍ ମଧ୍ୟରେ ସାକ୍ଷାତ କରି ଯୋଗ୍ୟ ପ୍ରାର୍ଥୀ ବାଛିବା କଣ ସହଜ ? ଖାଲି କାଗଜପତ୍ରରୁ ବା ବିଶ୍ୱବିଦ୍ୟାଳୟର ସାର୍ଟିଫିକେଟ୍‌ରୁ ବ୍ୟକ୍ତିର ବ୍ୟାପକତାକୁ କଳନା କରିହୁଏ ନାହିଁ । ଯାହାର କେହି ଜଣାଶୁଣା ନଥିବେ; ଯାହାର କୁଳ ଜ୍ଞାତି ସମ୍ପର୍କ ସବୁ ଅଜ୍ଞାତ ତା' ଉପରେ ଭରସା ରଖି ଲକ୍ଷ ଲକ୍ଷ ଟଙ୍କାର ଦାୟିତ୍ୱ ଲଦିଦେବା କଣ ସବୁବେଳେ ନିରାପଦ ?

ଏହିଭଳି ଆଶଙ୍କା ଏଡ଼ିବାପାଇଁ ଦରଖାସ୍ତରେ ଜାତି, ଜନ୍ମସ୍ଥାନ, ନାଗରିକତା, ବ୍ୟବସାୟ, ସମ୍ପର୍କ ଓ ସୁପାରିଶକାରୀଙ୍କ ପରିଚୟ ସମ୍ବନ୍ଧରେ ବିଶେଷ ବିବରଣୀ ଯୋଗାଇବାପାଇଁ ନିର୍ଦ୍ଦେଶ ଦିଆଯାଇଥାଏ । ଦରଖାସ୍ତକାରୀ ତା' ପାରୁପର୍ଯ୍ୟନ୍ତ ଚେଷ୍ଟାକରି ସେସବୁ ଯୋଗାଇଦିଏ । ସମସ୍ତେ ଚେଷ୍ଟା କରନ୍ତି ଜଣେ ସୁନାମଧନ୍ୟ ବ୍ୟକ୍ତିଙ୍କର ନାମ ଉଲ୍ଲେଖ କରିବାକୁ ; କିନ୍ତୁ ଗୋଟିଏ ଚାକିରିକୁ ଶହ ଶହ ଦରଖାସ୍ତ । ୧୨୮ ସ୍ଥାନକୁ ୧୬ ଶହ ନାମଲେଖାଇଲି । ଗୋଟିଏ ଶଯ୍ୟାକୁ ପଚିଶଟି ପେଟେମଜ୍ ରୋଗୀ । ବସ୍‌ରେ ବସିବା କଥା ଉଠୁନାହିଁ ଖାଲି ଠିଆ ହେବାପାଇଁ ଷାଠିଏ ଲୋକଙ୍କ ଠେଲାପେଲା । ସିନେମା ସାମ୍‌ନାରେ କୁକୁର ଲଙ୍ଗଡ଼ ପରି ଲୋକଙ୍କ ଧାଡ଼ି ମୋଡ଼ି ହେଲାଣି । ଜନତାର ଏହି ଦୈନନ୍ଦିନ ଠେଲାପେଲା ଭିତରେ ବ୍ୟାକିଂ ଏକମାତ୍ର ସହାୟ ।

ଏବେ କେତେକେ ଯୁକ୍ତି କରୁଛନ୍ତି ବ୍ୟାକିଂ ଓ ସୁପାରିଶ ଏକା କଥା । ଯାହାର ଯେତେ ସମ୍ପର୍କ ଓ ଚିହ୍ନାପରିଚୟ ଥିବ ସେ ସେତେ ସୁପାରିଶ ଯୋଗାଡ଼ କରିପାରିବ । ଯେ ସର୍ବହରା ତାର ବ୍ୟାକିଂ କି ସୁପାରିଶ ପ୍ରାପ୍ତି ଦରକାର ନାହିଁ । ଗଛମୂଳେ ଜନ୍ମ ହୋଇ, ଫୁଟ୍‌ପାଥ୍‌ରେ ଶୋଇ, ହୋଟେଲର ଅଇଁଠା ପତ୍ରକୁ ସମ୍ବଳ କରି, ମୁକ୍ତ ଆକାଶ ତଳେ ସେ ବଢ଼ିଛି । ମନ ହେଲେ ସିନେମାର ଆଗ ଧାଡ଼ିରେ ବସିବା ପାଇଁ ସେ ବାବୁଙ୍କର ଯୋତା ସଫାକରେ କି ପକେଟ୍ କାଟେ । ସେ କାହିଁକି ଜୀବନରେ ବ୍ୟାକିଂ କି ସୁପାରିଶ ଖୋଜିବ ? ଯେ ସମାଜରେ ପ୍ରତିଷ୍ଠିତ ହେବାକୁ ଚାହେଁ ତାର କେବଳ ଲୋଡ଼ା ବ୍ୟାକିଂ । ଯା'ର ବନ୍ଧୁବାନ୍ଧବ, ଜ୍ଞାତି କୁଟୁମ୍ବ ସମାଜରେ ବା ଶାସନ କଳରେ ଉଚ୍ଚ ଆସନ ଦଖଲ କରିଛନ୍ତି ସେ ତ ଯେ କୌଣସି ନୀତି ନିୟମରେ ମଧ୍ୟ ଲାଭବାନ ହେବ । ଯାହାର ବାପା ରେଲୱେରେ ଚାକିରି କରୁଥିଲା ଆଗେ ବ୍ରିଟିଶ୍ ସରକାର ତା ପୁଅକୁ ସେଇଠି ଚାକିରି ଖଣ୍ଡିଏ ଡାକି ଦେଇ ଦେଉଥିଲା ଏବେ ସେପରି ନ କରି ଆମେ ତାର ଜାତି, ଜନ୍ମସ୍ଥାନ, ବ୍ୟବସାୟ ଓ ସୁପାରିଶକାରୀଙ୍କୁ ଖୋଜୁଛୁ । ସୁପାରିଶକାରୀ ଯଦି ଚିଠି ଲେଖିବା ଛଡ଼ା ଅଧିକ ଆନ୍ତରିକତା ଦେଖାଇ ଥରକୁ ଦିଥର ଦୌଡ଼ାଦୌଡ଼ି କଲା, ପ୍ରାର୍ଥୀର ବ୍ୟାକିଂ ଅଛି ବୋଲି ଆମେ ସ୍ଥିର କରିନେଉ । ଆଗେ ପାସ୍ କରିବା ପୂର୍ବରୁ ଅଧ୍ୟାପକ ହେବାକୁ ନିଯୁକ୍ତି ମିଳିଯାଉଥିଲା । ସେଥିପାଇଁ କା'ର ବ୍ୟାକିଂ ଥିଲେ ବି ଆପତ୍ତି କରିବାକୁ ଆଉ ଅଧିକା ଲୋକ ନଥିଲେ । ଏବେ ତ ହାଟ ଗହଳିରୁ ଅଧ୍ୟାପକ ବାଛିବାକୁ ହେଉଛି । ଯେଉଁମାନେ ରହିଗଲେ ସେମାନେ ଯୋଗ୍ୟ ହୁଅନ୍ତୁ ବା ଅଯୋଗ୍ୟ ହୁଅନ୍ତୁ ଆପତ୍ତି ନିଶ୍ଚୟ କରିବେ ।

ଥରେ ଜଣେ ମନ୍ତ୍ରୀ ବକ୍ତୃତା ପ୍ରସଙ୍ଗରେ କହିଲେ, "ବନ୍ଧୁଗଣ, ମନ୍ତ୍ରୀ ହୋଇ ମୁଁ ଯଦି ମୋର ବନ୍ଧୁବାନ୍ଧବଙ୍କୁ ଥଇଥାନ କରି ନ ପାରିଲି, କାଲି ମନ୍ତ୍ରିତ୍ୱ ଗଲେ ମୁଁ କାହାର ଆଶ୍ରୟ ନେବି ? ମନ୍ତ୍ରୀ ଥିଲାବେଳେ ମୋ ଗାଁ ବଣ୍ଡ ଯଦି ସଡ଼କ ନ ହେଲା, ମୋ ଗାଁ କ୍ଷେତରେ ଯଦି ନାଳ ପାଣି ନ ମାଡ଼ିଲା କାଲି ଏହି ବିରୋଧୀ ଦଳ କହିବ ଯେ ଯେଉଁ ଅପଦାର୍ଥ ନିଜର କିଛି କରି ନ ପାରେ ସେ ବା ଅପରର କଣ କରିବ ? କେଉଁ ଭରସାରେ ଆପଣ କାଲି ମୋତେ ଭୋଟ ଦେବେ ? ସରକାରର ସମ୍ବଳ ତ ସୀମିତ । ସବୁ ଗାଁକୁ କେବେ ସଡ଼କ ପଡିପାରିବ ନାହିଁ । ଯେଉଁ ଗାଁରେ ପଡ଼ିଥାନ୍ତା ସେଇ ଗାଁକୁ ଛାଡ଼ିଦେଲେ ଅନ୍ୟ ଗାଁର ଲୋକେ ମୋ ଉପରେ ସେମିତି ଅସନ୍ତୁଷ୍ଟ ହୋଇଥାନ୍ତେ । ମୋ ଗାଁଟା ତ ପାକିସ୍ତାନ କି ଚୀନରେ ନୁହେଁ ? ସଡ଼କଟା ତ ଦେଶ ଭିତରେ ପଡ଼ୁଛି, ଆପଣମାନେ ଏତେ ବ୍ୟସ୍ତ ହେଉଛନ୍ତି କାହିଁକି ?"

ପ୍ରକୃତରେ ବ୍ୟସ୍ତ ହେବାର କିଛି ନାହିଁ । କାହାର କୋଠା ତିଆରି ହେଲେ ଆଖପାଖରେ ମୂଲିଆମାନେ ତ କାମ ପାଇଲେ । ସିମେଣ୍ଟ ବ୍ୟବସାୟୀ ଦିପଇସା ଲାଭ କଲା । କେହି ମାଛ ମାଂସ ଖାଇଲେ ବିକାଳିମାନେ ତ ଭରଣ ପୋଷଣ ପାଇଁ କିଛି ଲାଭ କଲେ । ତେଣୁ ପୁଞ୍ଜିପତିମାନେ ବୁଝିଲେ ଜନତା ଯେ ଯେଉଁ ଦେଶର ପୁଞ୍ଜି ସମସ୍ତଙ୍କୁ ମାଛ ମାଂସ ଯୋଗାଇ ପାରିବ ନାହିଁ ସେଠି କେତେ ଜଣ ମାଛମାଂସ ଖାଇଲେ ବୋଲି ଆନ୍ଦୋଳନ କରିବା ଅନୁଚିତ । ମାଂସ ଖିଆଳିର ମାଂସକୁ ଚିକ୍ ଚିକ୍ କଲେ ସମସ୍ତଙ୍କୁ ମାଂସ ମିଳିବ ନାହିଁ । ତାହାଦ୍ୱାରା ଦେଶର ଉତ୍ପାଦନ ବୃଦ୍ଧି ହେବ ନାହିଁ । ବରଂ ଯେଉଁ କେତେକ ଅତିରିକ୍ତ ପରିଶ୍ରମ କରି ନିଜର ସମ୍ବଳ ଅଭିବୃଦ୍ଧି କରିଛନ୍ତି, ସେମାନେ ନିରୁତ୍ସାହ ଓ ଅଥର୍ବ ପାଲଟିଯିବେ । ଅଧିକ ପରିଶ୍ରମ କରି ସମୃଦ୍ଧି ହାସଲ କରିବାକୁ କେହି ଉତ୍ସାହିତ ବା ଅନୁପ୍ରାଣିତ ହେବେ ନାହିଁ ।

ଅନ୍ୟଆଡ଼େ ଦୃଷ୍ଟି ଫେରାନ୍ତୁ । ଯେଉଁମାନେ ଦିନସାରା ହାଡଭଙ୍ଗା ପରିଶ୍ରମ କରି ଫୁଟ୍‌ପାଥ୍‌ରେ ଶୋଉଛନ୍ତି, ସେମାନେ ଆଉ କେତେଦିନ ନିଶ୍ଚିନ୍ତରେ ଶୋଇବେ ? କେତେଦିନ ସେମାନେ ଅନ୍ୟର କୋଠା ଗଢ଼ି ଅନ୍ୟକୁ ମାଛମାଂସ ଯୋଗାଇ ତୋରାଣି ପିଇ ଭୋକ ମାରିବେ ? ବର୍ଷ ବର୍ଷର ସୁଚିନ୍ତିତ ଯୋଜନା ଯଦି ସେମାନଙ୍କ ଦୁଃଖ ଜଞ୍ଜାଳ ଲାଘବ ନ କରେ ଯୋଜନା ଓ ଶାସନକଳ ବିରୁଦ୍ଧରେ ସେମାନେ ବିରକ୍ତ ବା ବିଦ୍ରୋହୀ ହୋଇ ଉଠିବା ସ୍ୱାଭାବିକ ।

ଆମର ଧର୍ମ ଓ ପରମ୍ପରା ସେମାନଙ୍କୁ ଏଯାବତ୍ ସନ୍ତୁଷ୍ଟ କରି ରଖିଛି । ଯେତେବେଳେ ସୁପ୍ରଚଳିତ ପରମ୍ପରା ଓ ସାମାଜିକ ରୀତିନୀତି ଆଧୁନିକତାର ପ୍ରଭାବରେ ଭୁଷୁଡ଼ି ପଡ଼ୁଛି, ସେତେବେଳେ ଲୋକଙ୍କୁ ସେମାନଙ୍କର ନ୍ୟାଯ୍ୟ ଅର୍ଥନୈତିକ ସୁବିଧା ନ ଦେଲେ ନାନା ସମାଜବିରୋଧୀ ବିଭ୍ରାଟ ଉପୁଜିବ । ଆଜି ପ୍ରାର୍ଥୀଙ୍କର ପଦସ୍ଥ ସମ୍ପର୍କୀୟମାନେ ମୃଦୁ ହସ ହସି କୃପା ଭିକ୍ଷା କରୁଛନ୍ତି । ଆମେ ତାଙ୍କର ମୁକ୍ତାପରି ଦନ୍ତପଂକ୍ତି ଦେଖି ତାଙ୍କୁ ସୁପାରିଶ କରୁଛେ । କାଲି ସର୍ବହରା ପ୍ରାର୍ଥୀ ଦାନ୍ତକାମୁଡ଼ି ମୁଠା ଉଞ୍ଚାଇ ମାଡ଼ିଆସିବ । କଣ କରିବାକୁ ହେବ ଆମକୁ ବୁଦ୍ଧି ବାଟ ପାଇଟିବ ନାହିଁ । କାଲିର ସୁପାରିଶ ଆଜି ବ୍ୟାକିଂ ଆସନ୍ତାକାଲି ବିଦ୍ରୋହକୁ ସଙ୍ଗ ଳ ଆଣିବ । ଏଥିପାଇଁ ଆମକୁ ବେଳଥୁଁ ସାବଧାନ ହେବାକୁ ହେବ । 'ବ୍ୟାକିଂ ନାହିଁ' ବୋଲି ଯେଉଁମାନେ ନିରାଶ ଓ ନିରୁତ୍ସାହ ହୋଇ ଫେରିଗଲେ ସେମାନେ ଯଦି ଏକଜୁଟ ହୋଇ ଫେରିପଡ଼ିବେ ଆମେ ତାଙ୍କୁ କି କୈଫିୟତ୍ ଦେବୁ ?

— — —




## ହାଣ୍ଡିଶାଳ ଆନ୍ଦୋଳନ—

ବଡ଼ବଡ଼ିଆ କହିଛନ୍ତି, 'ଘରକଥା ପଦାରେ କହିବ ନାହିଁ।' ବିଶେଷତଃ ଘରଣୀଙ୍କ ଶିକ୍ଷା ଦୀକ୍ଷା କଥା । ଏ ନିର୍ଦ୍ଦେଶ ନ ମାନିଲେ ଘରୋଇ ବିଭ୍ରାଟ ଅଚଳ ହୋଇପଡ଼େ । ହାଣ୍ଡି ମାଙ୍କଡ଼ଶର ମାରେ । ପିଲାଏ "ଖାଇବି ଖାଇବି" ଢଙ୍ଗ ନଣ ବୃଦ୍ଧ ସିଂହଙ୍କୁ ମଧ୍ୟ ଅସମ୍ମାନ କରିପକାନ୍ତି । ତେଣୁ କହିଲା-ବେଳେ ବା ଲେଖିଲାବେଳେ ସତର୍କ ଦୃଷ୍ଟି ଦେବାକୁ ହୁଏ । ତାହା ଯେ କୌଣସି ଲେଖକ ବା ବକ୍ତାଙ୍କର ଲକ୍ଷଣ । ତେବେ ବଢେଇ ଚଢେଇ କହିବା ଯେମିତି ସାହିତ୍ୟର ଧର୍ମ, ଖୋକ୍‌ଠୋକ୍ ବତେଇବା ସେମିତି ବିଜ୍ଞାନର ନିର୍ଦ୍ଦେଶ ।

ଜଣେ ଅର୍ଥଶାସ୍ତ୍ରଜ୍ଞ କହିଥିଲେ ଯେ ଭାରତରେ ପ୍ରାୟ ଅଧାଅଧି ଲୋକେ କେବଳ ଘରୋଇ କରନ୍ତି । ଦିନସାରା ଖାଲି ଘରୋଇ କାମ, ପରିବା କଟା, ମସଲା ବଟା, ଜାଇ ରଗଡ଼ା, ଶାଗ ଖରଡ଼ା, ଖୁଆଇବା ଓ ଖାଇବା ଆଦି । ଅଥଚ ବିଲାତ ଆମେରିକାରେ ଘରୋଇର ଏ ଆନ୍ଦୋଳନ ଲମ୍ବା ହାଣ୍ଡିଶାଳର ଏ ଜାକ୍‌ଜମକ କେହି ଦେଖିବାକୁ ପାଇବ ନାହିଁ । ଯଦିବା କେଉଁଠି ଥାଏ ତାର ରୂପ ଅଲଗା ଓ ସେ କ୍ଷଣସ୍ଥାୟୀ ।

## ହାଣ୍ଡିଶାଳ ବନ୍ଦିନୀ—

ଏକଥା ଶୁଣି ବୁଢ଼ାଏ ନାକ ଟେକିବେ ! କହିବେ, ବେଶଭୂଷା ତ ବଦଳିଲା, ଭାଷା ତ ବଦଳିଲା, ପୁଣି ଭିତର ସବୁ ଖରାପ ସଂସ୍କୃତିକୁ ତଡ଼ିବାକୁ ଏ ଏକ

ନୂଆ ଉଦ୍ୟମ । ଏଇଥିରେ ଏମିତି ଅଗ୍ରନକ ଚମକିବା ଉଚିତ ନୁହେଁ । ପୁରୁଣା ପ୍ରଥାକୁ ଘଷିମାଜି ନୂତନ କରିବାରେ ସଂସ୍କୃତି ଲୋପ ପାଏ ନା, ବରଂ ନ କଲେ ଦେଶ ଦରିଦ୍ର ହୁଏ । ଯୁଗର ପ୍ରଗତି ସଙ୍ଗେ ତାଳ ମିଳାଇ ନ ପାରିଲେ ସଭ୍ୟତା ପଛେଇ ଯାଏ ଓ ଶେଷରେ ଜାତି ଲୋପପାଏ ।

ଆଦିମ ଯୁଗରେ କେବଳ ଆହାର ଖୋଜି ଖୋଜି ମଣିଷ ଜୀବନ ବିତଉ-ଥିଲା । ଏବେ ପଶୁପକ୍ଷୀମାନେ ତାହାହିଁ କରନ୍ତି । ଆଉ ଆମେ ବିଂଶ ଶତାବ୍ଦୀର ସଭ୍ୟ ମଣିଷ ହୋଇ ଆମ ଭିତରୁ ଅଧେ ଲୋକଙ୍କୁ ଯାବଜ୍ଜୀବନ ହାଣ୍ଡିଶାଳେ ବନ୍ଦ କରି ରଖିବୁ ? ସେମାନେ ଖାଲି ସଂସ୍କୃତି ଧୂଆଁରେ ଅଣନିଶ୍ୱାସୀ ହୋଇ ଚୁଲି ଫୁଙ୍କିବେ । ବାଦଲ ଚିରି ମହାକାଶରେ ରକେଟ୍ ଆସେଇବ, ରୁଷିଆ ଓ ଆମେରିକାର ଲୋକେ ଚନ୍ଦ୍ରରୁ ସନ୍ଦେଶ ଆଣିବେ ଆଉ ଭାରତର ଅଧେ ଲୋକ ଖାଲି ଘଣ୍ଟା ଘଣ୍ଟା ଧରି ଭିତର ଘରେ ତରକାରି ରାନ୍ଧୁଥିବେ । ଏହା କେବଳ ଲଜ୍ଜାକର ନୁହେଁ ଦେଶ ପକ୍ଷରେ କ୍ଷତିକାରକ ।

### ସେ ଯୁଗ ଗଲାଣି —

କ୍ୟାନାଡ଼ାରେ ଶ୍ରୀମତୀ ଅମିତା ମଲ୍ଲିକ ବକ୍ତୃତା ଦେଉଥିଲେ । ପାଞ୍ଚଟଙ୍କା ଲେଖାଏଁ ଚାନ୍ଦା ଦେଇ ଶହ ଶହ କ୍ୟାନାଡ଼ା ରମଣୀ ବକ୍ତୃତା ଶୁଣିବାକୁ ଭିଡ଼ ଜମେଇଥିଲେ । ଅମିତା ପ୍ରାଞ୍ଜଳ ଭାଷାରେ ଗପି ଲାଗିଥାନ୍ତି ଭାରତୀୟ ପ୍ରଗତି ସମ୍ବନ୍ଧରେ । ଶେଷରେ ଝିଅଟିଏ ପଚାରିଲା । "ମିସେସ୍ ମଲ୍ଲିକ, ଭାରତରେ ସ୍ତ୍ରୀଲୋକ କିପରି ରୋଷେଇ କରନ୍ତି ?" ମିସେସ୍ ମଲ୍ଲିକ ଦିଲ୍ଲୀରୁ ଆସିଥିଲେ । କିରୋସିନ ଷ୍ଟୋଭ କଥା ବୁଝେଇ ଦେଲେ । ଝିଅଟି ଗୋବର ଜାଳ କଥା କାହିଁରେ ପଢ଼ିଥିଲା ବୋଲି କହିଲା । ଅମିତା କହିଲେ, "ସେ ଯୁଗ ବଦଳି ଗଲାଣି ।"

ପ୍ରକୃତରେ ଗୋବର ଯୁଗ ବଦଳି ଗଲାଣି । କେଉଁଠି ନ ବଦଳିଥିଲେ ବଦଳିବା ଉଚିତ । ଏଥିପାଇଁ ଆର୍ଥିକ ସମ୍ବଳ ଲୋଡ଼ା । ତାହାହେଲେ ଆସ୍ତେ ଆସ୍ତେ ଏ ଅବସ୍ଥା ସୁଧୁରିଯିବ । ବୈଠକଘରୁ ଆରମ୍ଭ କରି ହାଣ୍ଡିଶାଳ ପର୍ଯ୍ୟନ୍ତ ଘର ଭରିବ ଖାଲି ବୈଜ୍ଞାନିକ ଯନ୍ତ୍ରପାତି । ରେଡ଼ିଓ, ଟେଲିଭିଜନ୍, ଟେଲି-ଫୋନ୍, ଟେପ୍ ରେକର୍ଡ, ଶୀତତାପ ନିୟନ୍ତ୍ରଣ ବ୍ୟବସ୍ଥା, ରେଫ୍ରିଜରେଟର, ଇଲେକ୍ଟ୍ରିକ୍ ଷ୍ଟୋଭ, ଗ୍ୟାସ୍ ଚୁଲି ଓ ଲୁଗାସଫା ଯନ୍ତ୍ର ଇତ୍ୟାଦି । ଘରର ଏ ସାମଗ୍ରୀକୁ ଚଳେଇବ କିଏ ? ସମସ୍ତେ କହିବେ ଘରଣୀ; କିନ୍ତୁ ହଠାତ୍ ଯଦି କିଛି ବିଗିଡ଼ି ଯାଏ ତାହା ହେଲେ ତ ଭୟଙ୍କର ବିପଦ ।

## ସ୍ତ୍ରୀଙ୍କପାଇଁ ମିସ୍ତ୍ରୀ

ବତିକତି ଅନ୍ଧାର, ପଙ୍ଖା ଚଳୁନ, ରେଡ଼ିଓ ବାଜୁନ, ଇଲେକ୍‌ଟ୍ରିକ୍ ଷ୍ଟୋଭ ଅକାମୀ ହୋଇଗଲଣି । ଟେଲିଫୋନ୍‌ଟା କାମ କରୁଥିଲେ ସିନା ବାବୁଙ୍କୁ ଖବର ଦେଇ ହୁଅନ୍ତା । ଯୁଗେ ଯୁଗେ ତ ସ୍ୱର ଗୃହିଣୀ ଦମ୍ପତ୍ତି ଘରେ ଖଟ୍ଟୁ ନ ଥିବେ ଯେ ହୁକୁମ ପାଇଲା ମାତ୍ରେ ଘୋଡ଼ା ଛୁଆପରି ଛୁଟିବେ । ତାହା ହେଲେ ହେବ କଣ ? ଖାଲି ପ୍ୟୁଜ ତାରଟିଏ ଲଗେଇ ଦେଲେ ସବୁ ଚାଲିବ । ଏତକ କାମପାଇଁ ସବୁତକ ଉଣ୍ଟୁର । ଘରଣୀଙ୍କ ପାଠପଢ଼ା ବେଳେ ମାଟ୍ରିକ୍ୟୁ-ଲେସନରେ ସାଧାରଣ ବିଜ୍ଞାନ ନ ଥିଲା । ତା’ ଛଡ଼ା ଲବୋରେଟରି କାମକୁ ପସନ୍ଦ ନ କରି ସେ ଦର୍ଶନ ଶାସ୍ତ୍ରରେ ବି. ଏ. ପାଶ କରିବାକୁ ମନେକଲେ । ତେଣୁ ଆଧୁନିକ ଘର ଚଳେଇବା ପାଇଁ ଘରଣୀ ଆବଶ୍ୟକ କରନ୍ତି ଜଣେ ମିସ୍ତ୍ରୀ ।

## ଏବେ ବି ସେ ଗୃହଲକ୍ଷ୍ମୀ

ବୁଢ଼ାଏ କହନ୍ତି ସ୍ତ୍ରୀ ଗୃହଲକ୍ଷ୍ମୀ । କଥାଟା ସେ ଯୁଗର ହେଲେ ବି ଏଯୁଗରେ ମଧ୍ୟ ସତ । ଆଜିକାଲି ତ ରୋଗର ପ୍ରବଳ ପ୍ରାଦୁର୍ଭାବ । ଦେଶରେ ଯେତିକି ଡାକ୍ତର ଅଛନ୍ତି, ତେତିକି କମ୍ବା ତାଠାରୁ ଅଧିକ ରୋଗ ଅଛି । ଜାଲ, ଜୁଆ-ଚୋରି ତ ରୋଗୀ ଭଗବତର ସ୍ଥାନ ଦଖଲ କଲେଣି । ଘରଣୀ ଯଦି ଟିକିଏ ସାଧାରଣ ସ୍ୱାସ୍ଥ୍ୟରକ୍ଷା ଆଡ଼େ ନଜର ନ ଦିଅନ୍ତି ଘରେ ପିଲାଛୁଆଙ୍କୁ ଭାଇରସ୍ ଓ ବ୍ୟାକ୍ଟେରିଆମାନେ ଚଟ୍ଟ କରିଦେବେ । ଡାକ୍ତରମାନେ ଗୃହସ୍ୱାମୀଙ୍କୁ ଦିନ ଦିପହରେ ଦାଣ୍ଡର ଭିକାରି ବନେଇ ଦେବେ । ଆଉ ଜାଲ ଜୁଆଚୋରି କଥା କଣ କହିବା ? ରଙ୍ଗ ଚିହ୍ନିବା, ଗନ୍ଧ ବାରିବା, ନକଲ ଧରିବା, ସାନ୍ଦ୍ରତା କମ୍ବା ଆପେକ୍ଷିକ ସାନ୍ଦ୍ରତାର ଧାରଣା ନ ଥିଲେ କଳାବଜାରି ଧଳା ଆଲୁଅରେ ଆଖି ଝଲସାଇ ଦେବେ ।

## ନାଲି ଆଖିର ନାଲି ଟୋପିକୁ ଡର

ଆଜିକାଲି ସାମାଜିକ ପରିବେଶ ଯାହା ମାଆମାନେ ଅତି ଆଧୁନିକ ଗୃହ-ବିଜ୍ଞାନ କିଂବା ମନସ୍ତତ୍ତ୍ୱ ନ ପଢ଼ିଲେ ସନ୍ତାନମାନଙ୍କୁ ବାଟରେ ଚଳେଇବା ଅସମ୍ଭବ । ସେମାନେ ଖାଲି ଖୋଜି ଖୋଜି ଅନ୍ଧାରରେ ବାଟ ଫିଟାଇବେ । ରାସ୍ତା ଘାଟରେ ମେଳା ମେଳା ହୋଇ ଲୋକଙ୍କୁ ବାଟ ଚଲେଇ ଦେବେନାହିଁ । ନାଲି ଟୋପି ପିନ୍ଧି ବି ପୁଲିସବାଲା ତାଙ୍କ ନାଲି ଆଖି ଦେଖି ଚମକି ଯିବ ।

ସ୍କୁଲ କଲେଜ ବା ଲାଇବ୍ରେରୀର କାନ୍ଥ ବାଡ଼ ସବୁ ସିନେମା ଛବିରେ ଶୋଭିତ ହେବେ । କେତେକ କହି ପାରନ୍ତି ଏ ଦୃଷ୍ଟିରୁ ଖାଲି ମାଆମାନେ କାହିଁକି ନେବେ । ବାପାମାନେ ବି କିଛି ବହନ କରନ୍ତୁ ।

ଏ ସଂବନ୍ଧରେ ଗୋଟିଏ ପତ୍ରିକା ଲେଖିଥିଲା ଯେ ବାପାମାନେ ଏଥିପାଇଁ ଅଯୋଗ୍ୟ ବା ଅନୁପଯୁକ୍ତ । ଆମେରିକାରେ ଛୋଟପିଲାମାନେ କୁଆଡେ ସେମାନଙ୍କ ବାପାଙ୍କୁ ବର୍ଷକରେ ୫୨ଥର ଦେଖନ୍ତି । ଅର୍ଥାତ୍ ସକାଳେ ବିଛଣାରୁ ଉଠିଲା ବେଳକୁ ବାପା କାମକୁ ଯାଇ ସାରିଥାଏ । ସେମିତି ରାତିରେ ଫେରିଲା ବେଳକୁ ପିଲାଏ ଶୋଇ ପଡ଼ିଥାନ୍ତି । କେବଳ ରବିବାରରେ ଯାହା ଭେଟାଭେଟି । ଅବଶ୍ୟ କର୍ମକୁଣ୍ଠ ବା ଅଳସୁଆ ବାପାମାନଙ୍କ କଥା ସ୍ୱତନ୍ତ୍ର । ତେବେ ମୋଟାମୋଟି କହିଲେ ମାଆମାନେ ପିଲାଙ୍କ ଚଳଚଳନ ଅଧିକ ନିୟନ୍ତ୍ରଣ କରି ପାରିବେ । ମନସ୍ତତ୍ତ୍ୱବିତ୍‌ମାନେ ମଧ୍ୟ ସେଇଆ କହନ୍ତି । ଘର ସାଇତିବା, ପିଲାଙ୍କୁ ମଣିଷ କରିବା, ରୋଗ ଦାଉରୁ ପରିବାରକୁ ରକ୍ଷା କରିବା, କଳାବଜାରୀର ପ୍ରକଶ୍ୟ ଗ୍ରାସରୁ ମୁକୁଳିବାକୁ ହେଲେ ନାରୀ ଜାତିର ବିଜ୍ଞାନ ଶିକ୍ଷା ଜରୁରୀ ଆବଶ୍ୟକ ।

ବୈଜ୍ଞାନିକ ମନୋଭାବ ସୃଷ୍ଟି କରିବାପାଇଁ ନାରୀର ଯାହା ଅବଦାନ ପୁରୁଷର ତାହା ନାହିଁ । ଖାଲି ବିଜ୍ଞାନ ବିଷୟଟିଏ ପାଠ୍ୟପୁସ୍ତକ କଲେ ବା ବିଜ୍ଞାନ ଗୋଷ୍ଠିଏ କରିଦେଲେ ଯେ ବୈଜ୍ଞାନିକ ମନୋଭାବ ସୃଷ୍ଟି ହୋଇଯିବ ତାହା ଭାବିବା ନିତାନ୍ତ ଭୁଲ । ପିଲା ଭିତରେ ଦିନ ଦିନ ଧରି ଯାହା ଗଢ଼ିହୁଏ ତାହା ବର୍ଷ ବର୍ଷ ପାଇଁ ସୁଦୃଢ଼ ହୁଏ । ତାକୁ ପାଠ୍ୟପୁସ୍ତକର ବିଷୟବସ୍ତୁ ସହଜରେ ବୋହଲାଇ ପାରେନା । ପିଲାବେଳୁ ସେ ମାଆ ପାଖରୁ ଶୁଣେ, 'ହାତୀ ଶୁଣ୍ଢରେ ଇନ୍ଦ୍ର ବର୍ଷା କରନ୍ତି, ଗୁଣିଆ ଫୁଙ୍କିଦେଲେ ମେଡ଼ିକାଲ କଲେଜରେ ଅଧ୍ୟାପକ ମଧ୍ୟ ଅଚଳ ହୋଇଯିବେ, ଜ୍ୟୋତିଷଙ୍କ ଭବିଷ୍ୟତ୍ ବାଣୀ ବଳରେ ଆଜି ପାକିସ୍ତାନ ଆମ ଦେଶ ଆକ୍ରମଣ କଲା ; ପଞ୍ଚଗ୍ରହ କୂଟରେ ଯାତ୍ରା କରିବାରୁ ଇଞ୍ଜିନିୟରଙ୍କ ଜିପ୍ ଓଲଟିଗଲା ଇତ୍ୟାଦି ଇତ୍ୟାଦି ।' କେଉଁ ଶିକ୍ଷକ ପ୍ରଭାବ ପକାଇ ତାର ଏ ମନୋଭାବ ବଦଳେଇବ ? ପିଲାର ଅବଚେତନ ମନରେ ମାଆ ଯେଉଁ ରୂପ ଆଙ୍କିଦିଏ ସାରାଜୀବନ ତାହା ଆଲୋଡ଼ନ ସୃଷ୍ଟି କରେ ।

ଏସବୁ ଦୃଷ୍ଟିରୁ ସ୍ତ୍ରୀମାନଙ୍କ ପାଇଁ ବାଧ୍ୟତାମୂଳକ ବିଜ୍ଞାନ ଶିକ୍ଷା ଏକାନ୍ତ ଆବଶ୍ୟକ । ସେମାନେ ଇତିହାସରେ ଗବେଷଣା କରନ୍ତୁ, ସାହିତ୍ୟରେ ମର୍ମସ୍ପର୍ଶୀ କବିତା ଲେଖନ୍ତୁ, କନ୍ୟା ସଂସ୍କୃତର ଆବୃତ୍ତି କରନ୍ତୁ କିଛି ଯାଏ ଆସେ

ନା କିନ୍ତୁ ସେମାନଙ୍କ ମଧ୍ୟରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଥିବା ଉଚିତ । ପ୍ରାଥମିକ ବିଜ୍ଞାନର ମୂଳଦୁଆ ସୁଦୃଢ଼ କରିବାପାଇଁ କିଛି ସ୍ୱତନ୍ତ୍ର ବ୍ୟବସ୍ଥା ହେବା ଉଚିତ ।

## ସଂସ୍କୃତିର ପ୍ରହରୀ

କିଛି ବ୍ୟବସ୍ଥା କରିବାକୁ ହେଲେ ଅର୍ଥ ଲୋଡ଼ା । ତେଣୁ ସ୍ୱତନ୍ତ୍ର ବ୍ୟବସ୍ଥା ପ୍ରତି ସହଜରେ କେହି ଆକୃଷ୍ଟ ହୁଅନ୍ତି ନାହିଁ । ସେଥିପାଇଁ ପ୍ରତ୍ୟେକ ଛାତ୍ର ଅନ୍ତତଃ ଆଇ. ଏସ୍‌ସି. ପର୍ଯ୍ୟନ୍ତ ବିଜ୍ଞାନ ପଢ଼ିବା ଉଚିତ । ସେ କଲେଜରେ ପଢ଼ିପାରେ କିମ୍ବା କୌଣସି ବିଜ୍ଞାନ ପୁସ୍ତକରୁ ଆପେ ଆପେ ପଢ଼ିପାରେ ; କିନ୍ତୁ ଏଥିପାଇଁ ତାକୁ ଆଗ୍ରହ ସୃଷ୍ଟି କରିବାକୁ ହେବ । ତାହା ଆମ ଦେଶର ଆହ୍ୱାନ । କୋଟି କୋଟି ନାଗରିକଙ୍କୁ ଧରି ଦେଶ ସବୁଦିନେ ପର ଦୁଆରକୁ ଚାହିଁ ବସିବ ନାହିଁ ।

ସମସ୍ତେ ମାଡ଼ାମ୍ କ୍ୟୁରି ପରି ବୈଜ୍ଞାନିକ ନ ହୋଇ ପାରନ୍ତି କିନ୍ତୁ ବିଜ୍ଞାନ ଯୁଗରେ ପ୍ରଥମେ ନାଗରି ବିଜ୍ଞାନୀ ହେବା ଉଚିତ । ଏ ଦେଶର ଭବିଷ୍ୟତ ବଂଶଧରଙ୍କୁ ବିଜ୍ଞାନ ଯୁଗରେ ସମାନ୍ତର କରି ଠିଆ କରେଇବାକୁ ହେଲେ ପ୍ରତି ହାଣ୍ଡିଶାଳେ ଆଜି ବିଜ୍ଞାନ ପଶିବା ଦରକାର । ନଚେତ୍ ଯୁଗେ ଯୁଗେ ଆମେ ଦରିଦ୍ର ଓ ଅନୁନ୍ନତ ହୋଇ ରହିବୁ । ପରକୁ ହାତପାତି ସାହାଯ୍ୟ ମାଗିବୁ । ମନେ ରଖିବାକୁ ହେବ ଉଡ଼ାଣିଆ ସଂସ୍କୃତି ନାହିଁ । ଯଦିବା ଥାଏ ତାହା ଏକ ଛଳନା । ସ୍ୱତନ୍ତ୍ରତା ବିନା ତାହା ଟଳମଳ ହୋଇ ଭୁଷୁଡ଼ି ପଡ଼େ । ବିଜ୍ଞାନ ଶିକ୍ଷା ବଳରେ ସଂସ୍କୃତି ଲୋପ ପାଇବ ନାହିଁ ବରଂ ବିଜ୍ଞାନ ହେବ ସଂସ୍କୃତିର ପ୍ରହରୀ ।

---




## ସମସ୍ତେ ଏକମତ

ବର୍ତ୍ତମାନ ଦେଶରେ ଊଣା ଅଧିକେ ସମସ୍ତେ ଏକମତ ଯେ ସ୍କୁଲ୍ କଲେଜର ଶିକ୍ଷା ବ୍ୟବସ୍ଥାରେ କିଛି ନା କିଛି ତ୍ରୁଟି ରହିଯାଇଛି । ଏଥିପାଇଁ ଅନେକେ ଶିକ୍ଷାବିତ୍ ବ୍ୟସ୍ତ ହୋଇଛନ୍ତି । ଅନେକେ ଭାବେଣି କରୁଛନ୍ତି, କ'ଣ କଲେ ଆମ ଶିକ୍ଷାର ମାନ ଉନ୍ନତ ହେବ । ଛାତ୍ରମାନେ ସାଧୁ ସଚ୍ଚରିତ୍ର ଓ ସୁଶୃଙ୍ଖଳ ହେବେ । ଦେଶର ଯୁବଶକ୍ତି ଅବାଟରୁ ଫେରିଆସି ବାଟରେ ଚାଲିବେ । ଏଥିପାଇଁ ଅନେକ ଯୁକ୍ତିତର୍କ ହୋଇଛି । ଆଲୋଚନା ସମାଲୋଚନା ହେଉଛି । ପୁରୁଣା ଫାଇଲ୍ ମୋଟା ହୋଇଛି । କେତେ ନୂଆ ଫାଇଲ୍ ମୁଣ୍ଡ ଟେକୁଛି । ତଥାପି ଛାତ୍ରମାନେ ରାଜନୀତି ବିଜ୍ଞାନ ନ ପଢ଼ି ରାଜନୀତି କରୁଛନ୍ତି । ଜଟିଳ ପରୀକ୍ଷା ପ୍ରଶ୍ନ ସହଜରେ ଚିରି ଦେଇ କାଚ ଝରକା ଭାଙ୍ଗୁଛନ୍ତି ।

ମାନ୍ୟବର କେନ୍ଦ୍ର ଶିକ୍ଷାମନ୍ତ୍ରୀ ଶ୍ରୀ ଚଗଲା ବିରକ୍ତ ହୋଇ ଆଜ ୧୨୦ଟି ଯାକ କମିଟି ଭାଙ୍ଗି ଦେଇଥିଲେ । ହଜାର ହଜାର ସଭ୍ୟ ଏ ସମସ୍ୟାରୁ ନିଷ୍କୃତି ପାଇଲେ । ୭ ଶହ ଅଫିସର ବେକାର ହୋଇଥିଲେ । ବିଜ୍ଞାନ ଛାତ୍ର ଓ ସଂସ୍କୃତ ଛାତ୍ରଙ୍କୁ ଚିହ୍ନି ହେଉନ । ଉଭୟଙ୍କର ପୁସ୍ତକ କଣ୍ଠସ୍ଥ । ପାଠ ଜଳବତ୍ ତରଳ । ଗବେଷଣା କରିବାକୁ ଲୋକ ମିଳୁ ନାହାନ୍ତି । ଆଇ. ଏ. ଏସ୍. ପରୀକ୍ଷା ହଲ୍‌ରେ ସୋରିଷ ପଡ଼ିବାକୁ ସ୍ଥାନ ନାହିଁ । ଏ ହେଲା ମୋଟାମୋଟି ଆମ ଦେଶର ବ୍ୟବସ୍ଥା ।

## ବିଜ୍ଞାନ ପ୍ରସାର

କେହି ଅସ୍ୱୀକାର କରିବେନ ଯେ ବିଜ୍ଞାନ ଶିକ୍ଷା ପ୍ରତି ଲୋକ ତଥା ସରକାରଙ୍କ ନଜର ପଡ଼ୁଛି । ଯେଉଁ ଗାଁକୁ ମଟର ରାସ୍ତା ନାହିଁ ସେଠି ବିଜ୍ଞାନ

କଲେଜ ହେଲଣି । ତୃତୀୟ ଚତୁର୍ଥ ଶ୍ରେଣୀରେ ବି ସାଧାରଣ ବିଜ୍ଞାନ ପଢ଼ା ହେବାର ବନ୍ଦୋବସ୍ତ ହେଲଣି । ଏହା ଶୁଭ ଲକ୍ଷଣ । ନିପଟ ମଫସଲରେ ବି ବିଜ୍ଞାନ ପାଠ ଆଉ ଅଜଣା ଅଶୁଣା ହୋଇନାହିଁ । ଘରେ ଘରେ ନ ହେଲେ ବି ଆଜି ପ୍ରତି ଗାଁରେ ସଞ୍ଜ ହେଲେ ସାନ୍ତ୍ରି ବୁଢ଼ା ଓ ମଙ୍ଗୁଳି କଥାବାର୍ତ୍ତା ଆରମ୍ଭ କରି ଦିଅନ୍ତି ।

ଦେଖାଯାଉ ଛୋଟ ପିଲାଙ୍କ ବିଜ୍ଞାନ ଶିକ୍ଷାପାଇଁ ଆମେ କଣ କରିଛେ ? ଛୋଟ ପିଲାଟି ପ୍ରାଥମିକ ସ୍କୁଲକୁ ଅଳ୍ପ କେତେ ଘଣ୍ଟା ପାଇଁ ଆସେ । ଅଧିକାଂଶ ସମୟ ସେ ଘରେ ରହେ । ତାଙ୍କ ଘରେ ରେଡ଼ିଓ, କ୍ୟାମେରା, ଘଣ୍ଟା, ଟେଲିଫୋନ୍ ଓ ମଟର ଗାଡ଼ି ଆଦି ଥାଇପାରେ; କିନ୍ତୁ ସେ ସବୁ ପିଲାର ହାତ ପା’ନ୍ତାରେ ଥାଏ କି ? ପିଲାଟି କେବେ ରେଡ଼ିଓ ମୋଡ଼ିଲେ ମା ରେଡ଼ିଓକୁ ଟିପି ପାଟି କରନ୍ତି ! ଘଣ୍ଟାର ଟିକ୍ ଟିକ୍ ଶବ୍ଦ ଶୁଣିବାକୁ କାନ ଡେରିଲେ ଭାଇ କାନ ମୋଡ଼ି ଦିଅନ୍ତି । ଟେଲିଫୋନ୍ ପାଖରେ ପହଞ୍ଚିଲେ ବାପା ନାଲି ଆଖି ଦେଖାନ୍ତି । ତେଣୁ ଏ ସବୁ ଯନ୍ତ୍ରପାତିଠାରୁ ସେ ଦୂରେଇ ଯାଏ । ନୂଆ ଯନ୍ତ୍ରଟିକୁ ଦେଖିଲେ ତାକୁ ଛୁଇଁବାକୁ ଡରମାଡେ । ସ୍କୁଲରୁ ଫେରିଲେ ସେ କୁକୁର ଛୁଆ ଧରି ଶିକାର କରେ କିମ୍ବା ଗୁଡ଼ି ଉଡ଼ାରେ ମନ ଉଡ଼ାଏ । ଅବଶ୍ୟ ଆମ୍ଭମାନଙ୍କର ଆର୍ଥିକ ସମ୍ବଳ ଯାହା ଏ ସବୁ କଷ୍ଟୋପାର୍ଜିତ ଯନ୍ତ୍ରପାତି ଶିଶୁଠାରୁ ଦୂରେଇ ନ ରଖିଲେ ଆମ୍ଭେମାନେ ସର୍ବସ୍ୱାନ୍ତ ହୋଇ ପଡ଼ିବୁ ।

## ମିଟର ନା ଲିଟର

ସେଦିନପରି କଲେଜରେ ପ୍ରଥମ ବାର୍ଷିକ ଛାତ୍ର ପରୀକ୍ଷାଗାରରେ ପାଦ ଦେଉଁ ଦେଉଁ ଅଧ୍ୟାପକ ତାଗିଦ୍ କରନ୍ତି । ଏ ଘରେ ବହୁ ମୂଲ୍ୟବାନ୍ ଯନ୍ତ୍ରପାତି ଅଛି । କୌଣସିଟି ଭାଙ୍ଗିଗଲେ ତମେ ଦାୟୀ ହେବ । ଫଳରେ ଷ୍ଟେଗଜିଟିର ପେଚ ଯଦି ଆଣ୍ଠି ହୋଇଯାଏ ଛାତ୍ରଟି ସଜାଡ଼ିବାପାଇଁ ଅଧ୍ୟାପକଙ୍କ ପାଖରେ ପହଞ୍ଚେ । ବୃଦ୍ଧ ଅଧ୍ୟାପକ ଚିଡ଼ି ଉଠନ୍ତି । ଏଥିରେ ଛାତ୍ରର ବା ଦୋଷ କ’ଣ ? ପିଲାବେଳେ ରେଡ଼ିଓ ଦେଖିବାକୁ ଗଲାବେଳେ ମା ତାଡ଼ିଲେ, ଟେଲିଫୋନ୍ ପାଖରେ ଠିଆ ହେଲେ ବାପା ଗର୍ଜି ଉଠିଲେ, କ୍ୟାମେରାରେ ହାତ ଦେଲେ ଭାଇ ଚଟକଣା ଲଗାଇଲେ, ପରୀକ୍ଷାଗାରରେ ପାଦ ଦେଲାବେଳକୁ ଅଧ୍ୟାପକ ସତର୍କ ଧ୍ୱନି ଶୁଣାଇଲେ । ପିଲାର ସାହସ ଆସିବ କୁଆଡ଼ୁ ? ଯନ୍ତ୍ରଟିଏ ବିଗିଡ଼ି ଗଲେ ସେ ସଜାଡ଼ି ଦେବ ! ଯନ୍ତ୍ରପାତି ଦେଖିଲେ ତାର ମୁଣ୍ଡ ଘୂରିଯାଏ । କେବଳ ପୁସ୍ତକ ପାଠ ଯାହା ସେ ଆୟତ୍ତ କରେ । ଯଦି ଆଇ. ଏସ୍‌ସି.

ପରୀକ୍ଷାରେ କୌଣସି ସ୍ବଚ୍ଛ ମଦ୍ଦମର ତାପମାତ୍ରା ମାପିବା ପାଇଁ ଥର୍ମୋମିଟରର ଉପର ମୁଣ୍ଡଟି ମଦ୍ଦମରେ ବୁଡ଼ାଇ ପାରଦ ମୁଣ୍ଡଟି ଉପରକୁ ରଖେ ଏଥିରେ ବସ୍ମିତ ହେବାର କ'ଣ ଅଛି ? ଥର୍ମୋମିଟର ହେଉ ବା ମିଟର ସ୍କେଲ୍ ହେଉ ସବୁ ତା' ନିକଟରେ ଜଟିଳ ଯନ୍ତ୍ର । ଆଇ. ଏସ୍.ସି.ର କେତେଜଣ ଛାତ୍ର ନିଭୁ'ଲ ଭାବେ ବାରୋମିଟର ପଢ଼ି ଜାଣନ୍ତି ?

ଜଣେ ସ୍ୱନାମଧନ୍ୟ ପ୍ରଧାନ ଶିକ୍ଷକ କହୁଥିଲେ ତାଙ୍କ ପୁଅ ହାଇ ସ୍କୁଲରେ ପଢ଼ିଲାଣି । ଦିନେ କହିଲା ଲମ୍ବ ମାପିବା ପାଇଁ ଯେଉଁ ଏକକ ବ୍ୟବହାର କରାଯାଏ ତାକୁ କହନ୍ତି ଲିଟର । ଯଦି ସେ ଦିନେ ହେଲେ ଲିଟରରେ ପାଣି ମାପିନ ଥାନ୍ତା ମିଟରରେ ଫିତା ମାପିନ ସେ ଏ ଭୁଲ କରିବା ତ ସ୍ୱାଭାବିକ । ମିଟର ଓ ଲିଟର ଘୋଷିବା ବେଳେ ଅଦଳ ବଦଳ ହୋଇଯିବା ଅତି ସହଜ । ଆମେ ଆଜ ପାଠ୍ୟକ୍ରମକୁ ସଜାଡ଼ି ଯୁଗୋପଯୋଗୀ କରୁଛୁ, ନୂଆ ପାଠ ପ୍ରଚଳନ କରୁଛୁ, ଏପରିକି ଆମ ସାହିତ୍ୟକୁ ବୈଜ୍ଞାନିକ ଭିତ୍ତିରେ ପରିବର୍ତ୍ତନ କରୁଛୁ । ଏତିକିବେଳେ ଆମେ ବିଜ୍ଞାନର ଏହି ବାସ୍ତବ ଦିଗଟି ଭୁଲିଯିବା ନାହିଁ ।

## ମୋ ପରୀକ୍ଷାଗାର

ଏଥିପାଇଁ ଆଜ ଦରକାର ପଡ଼ୁଛି ଘରେ ବିଜ୍ଞାନ ଶିକ୍ଷା । ଏଥିପାଇଁ ଘରେ ଗୋଟିଏ ପରୀକ୍ଷାଗାର ଦରକାର । ପିଲାଏ ତାକୁ ଗଢ଼ିବେ । ଆମ ବଜାରରେ ବୈଜ୍ଞାନିକ ଯନ୍ତ୍ରପାତିର ଖେଳନା ମିଳେନା । ମିଳିଲେ ବି କିଣିବା ପାଇଁ ବାପମାଙ୍କ ଅର୍ଜନ ଯଥେଷ୍ଟ ନୁହେଁ । ଯଥାସମ୍ଭବ ଯନ୍ତ୍ରପାତି ଯୋଗାଡ଼ କରି ପିଲାଏ ତାଙ୍କ ପରୀକ୍ଷାଗାର ଗଢ଼ିବେ । ସେଠାରେ ବିଭିନ୍ନ ସରଳ ପରୀକ୍ଷା ପିଲାଏ ନିଜେ କରିବେ । ଏଥିପାଇଁ ସରଳ ଓ ଆଦରଣୀୟ ଭାଷାରେ ଚିତ୍ରପୂର୍ଣ୍ଣ ପୁସ୍ତକ ପ୍ରକାଶ ପାଇବା ଆବଶ୍ୟକ । କିଛି ଯନ୍ତ୍ରପାତି ବିଗିଡ଼ିଲେ ପିଲାଏ ନିଜେ ସଜାଡ଼ିବେ ବା ସଜାଡ଼ିବାକୁ ଚେଷ୍ଟା କରିବେ । ବାପମା ଏ ସମ୍ବନ୍ଧରେ ପିଲାଙ୍କୁ ଯଥାସମ୍ଭବ ସାହାଯ୍ୟ ଦେବାପାଇଁ ପ୍ରସ୍ତୁତ ଥିବା ଦରକାର । ଏଥିପାଇଁ ସେମାନଙ୍କର ସାଧାରଣ ବିଜ୍ଞାନ ସମ୍ବନ୍ଧରେ କିଛି ନା କିଛି ଧାରଣା ଥିବା ଆବଶ୍ୟକ ।

ଅନେକେ ଭାବି ପାରନ୍ତି ଆମ ଦେଶରେ ଏହା ସମ୍ଭବ ନୁହେଁ । ଘରେ ଘରେ କେହି ଆଇ.ଏସ୍‌ସି. ବା ବି. ଏସ୍‌ସି. ପରୀକ୍ଷାଗାର କରିବାକୁ କହୁନାହିଁ । ଯେଉଁ କେତୋଟି ଜିନିଷ ପିଲାଙ୍କୁ ଭଲ ଲାଗିବ ତାକୁ ନେଇ ସେ ତା'ର ପରୀକ୍ଷାଗାର ଗଢ଼ିବ । ପରୀକ୍ଷାଗାର ଗଢ଼ିବାର ମନୋଭାବ ରହିଲେ ଅନେକ

ଶସ୍ତା ଜନିଷ ମିଳିବ । ଗୃହବଧୂ ଦୃଷ୍ଟିରୁ ମଧ୍ୟ ଅନେକ ଯନ୍ତ୍ରପାତିରେ ଖେଳନା ତିଆରି ହେବ । ଅନେକ ସରଳ ବିଜ୍ଞାନ ପ୍ରଯୁକ୍ତି ମଧ୍ୟ ପ୍ରଦର୍ଶିତ ହେବ । ଯନ୍ତ୍ରପାତିର ଅନେକ ସରଳ ଶବ୍ଦ ମଧ୍ୟ ବାହାରିବ ।

## ସ୍ୱଚ୍ଛନ୍ଦ କାରବାର

କେତେକେ ପ୍ରଶ୍ନ ଉଠାଇ ପାରନ୍ତି କୌଣସି ସ୍କୁଲରେ ଏକ ସୁସଜ୍ଜିତ ପରୀକ୍ଷାଗାର ସୃଷ୍ଟି ନ କରି ଘରେ ଘରେ କରିବାର ତାତ୍ପର୍ଯ୍ୟ କ'ଣ ? ଘରେ ଥିବା ପରୀକ୍ଷାଗାରଟି ପିଲାର ନିଜର । ସେ ତାକୁ ଭାଙ୍ଗିବ ଓ ଗଢ଼ିବ । ସେଠି ହେବ ତାର ସ୍ୱଚ୍ଛନ୍ଦ କାରବାର । ସେ ତା'ର ବୁଦ୍ଧି ବୃତ୍ତି ଖୋଳନା କରିବ, କଳ୍ପନାଶକ୍ତିକୁ ପ୍ରସାରଣ କରିବ । ଆପେ ପୋଥିରୁ ପଢ଼ି ବାଡ଼ରେ ବାଇଗଣ ଫଳାଇବ ; କିନ୍ତୁ ସ୍କୁଲରେ ତାକୁ ପାଠ୍ୟକ୍ରମର କଟକଣା ଭିତରେ ଆବଦ୍ଧ ରହିବାକୁ ହେବ । ତା'ର ଅବାଧ କାରବାର ବ୍ୟାହତ ହେବ ।

କେତେକେ କହିପାରନ୍ତି ଏଥିରେ ଖର୍ଚ୍ଚାନ୍ତ ହେବାକୁ ହେବ ; କିନ୍ତୁ ଆଜ ଯାହା ହିସାବ ମିଳେ ଅଧିକାଂଶ ଘରେ ୩।୪ଟି ପିଲା । ୩।୪ଟି ପିଲାର ବିଜ୍ଞାନ ଶିକ୍ଷାପାଇଁ ଏ ବନ୍ଦୋବସ୍ତ ବାପମାଙ୍କୁ କେବେ ଅଯଥା ଖର୍ଚ୍ଚାନ୍ତ କରାଇବ ନାହିଁ । ସବୁପିଲା ବିଜ୍ଞାନ ନ ପଢ଼ିଲେ ମଧ୍ୟ ଏ ସ୍ତରର ବିଜ୍ଞାନ ଶିକ୍ଷା ସମସ୍ତଙ୍କ ପାଇଁ ଆବଶ୍ୟକ । ଘରେ, ବିଜୁଳିବତିର ସୁଇଚ୍‌ଟିଏ ସଜାଡ଼ିବାପାଇଁ ପର ଉପରେ ନିର୍ଭର କଲେ ଚଳିବ ନାହିଁ । ଏ ହେଲା ବିଜ୍ଞାନ ଯୁଗ । ଆମେ ଘରେ କେତେ ଯନ୍ତ୍ରପାତି ବ୍ୟବହାର କରୁଛୁ । ପ୍ରାୟ ପ୍ରତିଦିନ କୌଣସି ନା କୌଣସି ଯନ୍ତ୍ର ବିଗିଡ଼ିବ । ସେ ସବୁର ମରାମତି ପାଇଁ ଆମେ ମିସ୍ତ୍ରୀହାତକୁ ଅନେଇଲେ ଆମର ଦୈନନ୍ଦିନ କାମ ପଛେଇଯିବ । କେତେକେ କହିପାରନ୍ତି ସବୁ ବାପମାଙ୍କର ପରୀକ୍ଷାଗାର ପାଇଁ ସମ୍ବଳ ନାହିଁ ; କିନ୍ତୁ ଯେଉଁ ବାପମାଙ୍କର ସମ୍ବଳ ଅଛି ସେମାନେ ପ୍ରଥମେ ଏପରି ଗଢ଼ନ୍ତୁ । ଆସ୍ତେ ଆସ୍ତେ ଅନ୍ୟମାନେ ଆଗେଇବେ ।

ଲକ୍ଷ୍ୟକଲେ ଜଣାପଡ଼େ ପିଲାଏ ନିଜେ ବଗିଚାଟିଏ କରିବାକୁ, ଛୋଟ ପଶୁପକ୍ଷୀ ପାଳିବାକୁ, ଯନ୍ତ୍ରପାତି ଚଳେଇ ଶିଖିବାକୁ ପ୍ରବଳ ଆଗ୍ରହ ଦେଖାନ୍ତି । ଏ ଆଗ୍ରହର କଟକଣା ନ କରି ବାପମାମାନେ ଉପଯୁକ୍ତ ତାଲିମ ଦେଲେ ଭବିଷ୍ୟତକୁ ଠିକପିଲାଏ ସୁଶୃଙ୍ଖଳ ବୈଜ୍ଞାନିକ ମନୋଭାବ ନେଇ ଗଢ଼ି ଉଠନ୍ତେ ।

## ଅନେଇ ବସିଲେ ଦୁର୍ଦ୍ଦଶା

କ୍ୟାନାଡ଼ାରେ ଗୋଟିଏ ୨ୟ ବାର୍ଷିକ ଗଣିତ ଗ୍ରନ୍ଥକୁ କ୍ଲାଉଡ୍‌ଗ୍ରମ୍ବ ଜେରକ୍ସ କରୁଥିବାର ଦେଖିଥିଲି । ଆମ ଏମ୍. ଏସ୍‌ସି. ପାଠାଗାରରେ ଏ ଭଳିଟି ଏ ପର୍ଯ୍ୟନ୍ତ ଜଣାପାଇ ପାରିନି । ସେଠା ହଷ୍ଟେଲର ମୋ ସାମନା କୋଠରୀରେ ରହୁଥିବା ପ୍ରଥମ ବାର୍ଷିକ ବିଜ୍ଞାନ ଛାତ୍ର ଟ୍ରାନ୍‌ଜିଷ୍ଟର ରେଡ଼ିଓ ତିଆରି କରୁଥିଲା । ଆମ ଦେଶର ବି. ଏସ୍‌ସି. ଛାତ୍ର ଫର୍ମୁଲ କରି ତାର ଖଣ୍ଡିକର ରେଜିଷ୍ଟାନ୍‌ସ ମାପି ପାରେନା ।

କେତେକେ ପ୍ରତିବାଦ କରିପାରନ୍ତି ଯେ ଅନୁକରଣ କରିବା ଆମ ଜାତକରେ ନାହିଁ । ଗୋଡ଼େ ଗୋଡ଼େ ଆମେ ଚଳୁତ ଆମେରିକାକୁ ଗୋଡ଼େଇ ପାରିବୁ ନାହିଁ । ତାଙ୍କ ପରି ହେବାକୁ ଆମକୁ ତାଙ୍କ କୌଶଳ ଅନୁକରଣ କରିବାକୁ ହେବ । ଜାପାନଜାତି ଅନୁକରଣପ୍ରିୟ । ଆମେରିକାର ଅଧିକାଂଶ ଖେଳନା, ଟ୍ରାନ୍‌ଜିଷ୍ଟର, କ୍ୟାମେରା ଓ ଘଡ଼ି ଜାପାନୀ ହାତର କାରିମତି । ଜାପାନର ଆଜି ପ୍ରତିଘରେ ତାଙ୍କ ଯନ୍ତ୍ରପାତିର ନିର୍ମାଣ କାରଖାନା । ଆମ ଦେଶର ଗବେଷଣାଗାରରେ ଯଦି ଯନ୍ତ୍ରଟିଏ ବିଗିଡ଼ିଯାଏ ଆମ ଗବେଷକର ମୁଣ୍ଡ ବିଗିଡ଼ି ଯାଏ । କେତେ ମୂଲ୍ୟବାନ ଯନ୍ତ୍ର ଆଜି ମିସ୍ତ୍ରୀ ହାତକୁ ଅନେଇ ଅନେଇ ଅକାମି ହୋଇଗଲାଣି । ବେଳହୁଁ ଏହାର ପ୍ରତିକାର ଆମେଇ କରିବା । ଠିକ୍ ପିଲାଙ୍କୁ ହଳବାଳ କରିବା ଭାର ଆମରି ହାତରେ । ଆମେରିକା ବା ରୁଷିଆ ହାତକୁ ଅନେଇ ବସିଲେ ଆମ ଦଶା ଫେରିବ ନାହିଁ ।






## ରାଜାଙ୍କ ସଙ୍ଗେ ବିଦୂଷକ

ଗାଁ ଯାତରେ 'ରାଜାଙ୍କ ସଙ୍ଗେ ବିଦୂଷକ' ନ ବାହାରିଲେ ଲୋକେ ନାଟଦଳକୁ ପସନ୍ଦ କରନ୍ତି ନାହିଁ । ଭିଡ଼ ଭିତରେ କହୁଣୀ ଖାଇ ରେଳ ଟିକେଟ କାଟିବାକୁ ଆମେ ଯେତିକି ବ୍ୟସ୍ତ ହେଉ ରେଳଡବାରେ ଏକୁଟିଆଟା ଯିବାରେ କୌଣସି ଗୁଣେ କମ ବ୍ୟସ୍ତ ହେଉନା । ଜହ୍ନରାତିରେ ବନ୍ଧୁ ମେଳରେ ବାଟ ଚାଲିଲେ ଦୂରତା ବାଧେନା । ସିନେମାଘର ଦର୍ଶକରେ ପୂରିଥିଲେ ବି ପାଖରେ ଚିହ୍ନା ବନ୍ଧୁଟିଏ ନଥିଲେ ବଡ଼ ନିରୁଛୁଟିଆ ଲାଗେ । ନୂଆ ଭଡ଼ାଘରଟିଏ ଖୋଜିଲାବେଳେ କୂଅ ପାଇଖାନା ସାଙ୍ଗକୁ ପାଇ ପଡ଼ିଶାକୁ ଟିକେ ଚିହ୍ନି ନେବାକୁ ପଡ଼େ । କବି ବା ଲେଖକ ନ ହୋଇଥିଲେ ଖରାଦିନିଆ ସଞ୍ଜରେ ନଈକୂଳେ ଜଣେ ଏକୁଟିଆ ବୁଲିହୁଏ । ଏସବୁର ମୂଳରେ ଅଛି ଟିକିଏ ମନଖୋଲା ଖୁସିଗପ ।

## ବେକାରିଆ ବଦନାମ

ସତରେ ଟିକିଏ ଖୁସିଗପ ନ କଲେ ବେଳେ ବେଳେ ମଣିଷ ବଡ଼ ଅଧୀର ହୋଇପଡ଼େ । ଜନାକୀର୍ଣ୍ଣ ପୃଥିବୀ ନିର୍ଜନ ମରୁପରି ଲାଗେ । ଜଞ୍ଜାଳିଆ ଜଗତର ଜଞ୍ଜାଳ ଅସମ୍ଭାଳ ହୋଇଉଠେ । ମଜାଗପ କରିବାକୁ ପ୍ରାୟ ଜଣା ଅଧିକେ ସମୟରେ ଭଲ ପାଆନ୍ତି ; କିନ୍ତୁ ଖୁସିଗପ କରୁଚ ବୋଲି କହିଲେ ଲୋକେ ଚିଡ଼ନ୍ତି କାହିଁକି ? ଏହା କଣ ମାନ୍ୟଗଣ୍ୟ ଲୋକଙ୍କ ଆଚରଣବିରୁଦ୍ଧ ? ବୋଧହୁଏ ମଜାଗପ କରି ବେକାରିଆ ବଦନାମ ନେବାକୁ ଲୋକେ ଡରନ୍ତି । କିଭଳି ଅବସ୍ଥାରେ ପଡ଼ି ଲୋକ ମଜାଗପର ଆଶ୍ରୟନିଏ ଏକଥା କଣ କିଏ କେବେ ଭାବିଛି ? ସକାଳ ୧୦ଟାରୁ ସଞ୍ଜ ୫ଟାଯାଏ ଯିଏ ଡାକଘରେ ଟିକେଟ ବିକୁଛି

ତା କଥା ଥରେ ହବନ୍ତୁ ତ । ନୂଆ ପଇସା ଗଣିବା ସାଙ୍ଗକୁ ଟିକେଟ ବିକିବା ଭଳି ଏକ ମୂର୍ଖମୀ ହଗଡ଼ାଢ଼ିଆ କାମ । ଶାଢ଼ୁଆଣ୍ଟିଆ କରଣୀ ବ୍ୟାଙ୍କରେ ବସି ପେଭଗଷ୍ଠ ଲକ୍ଷ ଲକ୍ଷ ଟଙ୍କା ଗଣିବା । ଅଫିସ୍ କଲ ନୋଟବଣ୍ଡା ବାନ୍ଧିବା ତାର କାମ । ବିଜ୍ଞ ଅଧ୍ୟାପକ ନବୀନ ପଣ୍ଡିତ ... ବକର ବକର ହୁଅନ୍ତି । ପୁରୁଣା ପାଠକୁ ନୂଆ ପିଲାଙ୍କ ଆଗରେ ଗାଇବା ତାଙ୍କର କାମ । ଦୁର୍ମୂଲ୍ୟ ଜାଳେଣୀକାଠ ଅଭାବରେ କୋଇଲା ଚୂଲୀ ଫୁଙ୍କୁ ଫୁଙ୍କୁ କେଉଁ ଘରଣୀର ବା ଧୈର୍ଯ୍ୟ ରହିବ ? ଏମାନଙ୍କ ପକ୍ଷରେ ଟିକିଏ ଖୁସିଗପ କରିବା କଣ ଅପରାଧ ?

## ଗଧ ଖଟଣି

ଅବଶ୍ୟ ଜେଟ୍ ଓ ସ୍ପୁଟ୍‌ନିକ ଯୁଗରେ ନାକ ଚଳକୁ ଲୁଗାପିନ୍ଧି ଚକଆଲୁ ଆଜିକ ଖୁସିଗପ କରିବାକୁ ବେଳ ନାହିଁ । ପୁଞ୍ଜିପତି ଆମେରିକାରେ ଲୋକେ ଗଧପରି ଖଟୁଥିଲେ ବେଳେ ଆମ ପକ୍ଷରେ ଆମେରିକା ଗହମ ବା ଗହମ ଖାଇ ପୁଞ୍ଜିପତିଙ୍କ ପରି ଖୁସିଗପ କରିବା ଯେତିକି ଅସଙ୍ଗତ ସେତିକି ହାସ୍ୟାସ୍ପଦ ; କିନ୍ତୁ ମନସ୍ତତ୍ତ୍ୱବିତ ଓ ସମାଜବିଜ୍ଞାନୀ କହନ୍ତି କର୍ମକ୍ଳାନ୍ତ ଦୁନିଆରେ ସଂଯତ ପ୍ରବୃତ୍ତି, ସୁସ୍ଥମନ ଓ ସର୍ବଗୁଣସଂପନ୍ନ ବ୍ୟକ୍ତିତ୍ୱ ନେଇ ଚଳିବାକୁ ହେଲେ ମନଖୋଲା ମଜାଗପ ଦରକାର ।

## ଏକମୁହାଁ ବାଟ

ଦକ୍ଷିଣ କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ମନସ୍ତତ୍ତ୍ୱବିତ୍ ପ୍ରଫେସର୍ ଫିଲ୍‌ଡମ୍ୟାନ କହନ୍ତି "କେବଳ ମଜାଗପ ସାହାଯ୍ୟରେ ମନର ତାନ ମେଣ୍ଟିଯାଏ । ବ୍ୟକ୍ତିତ୍ୱର ବିକାଶ ହୁଏ । ମନୋବୃତ୍ତି ସଂଯତ ହୁଏ । ମନରେ ଭରି ରହିଥିବା ଅବସାଦ, ବିଷାଦ ଓ ଦ୍ୱନ୍ଦ୍ୱ ପ୍ରକାଶ ଫଳରେ ଲୋପପାଏ ।" ନୃତତ୍ତ୍ୱବିତ୍ ରେବେକା ବର୍କ ଷ୍ଟାର୍କଂଙ୍କର ମଧ୍ୟ ସେଇ ମତ । ସେ କହନ୍ତି "ମଜାଗପ ଗୋଟିଏ ଏକମୁହାଁ ବାଟ । ମାନସିକ ଯନ୍ତ୍ରଣା ଏଇ ବାଟ ଦେଇ ବାହାରକୁ ଚାଲିଯାଏ ; କିନ୍ତୁ ବାହାରୁ ଭିତରକୁ ଆସିପାରେ ନା ।" ସ୍ୱାସ୍ଥ୍ୟରକ୍ଷା ଦୃଷ୍ଟିରୁ ମଧ୍ୟ ଏହା ଏକାନ୍ତ ଆବଶ୍ୟକ । ନୈରାଶ୍ୟରେ ଭାଙ୍ଗିପଡ଼ି ଅନେକ ମଦୁଆ ହୋଇପଡ଼ନ୍ତି । ଦେଶସାରା ନିଶା ନିବାରଣ ଆନ୍ଦୋଳନ ଚାଲିଥିଲେ ବେଳେ ମଦ୍ୟପାନର ଅପକାରିତା ବୁଝାଇବା ଧୃଷ୍ଟତା ମାତ୍ର । ଡାକ୍ତରମାନେ କହନ୍ତି, ଆତ୍ମଗ୍ଳାନି ଓ ଦୁଶ୍ଚିନ୍ତା ଫଳରେ ପାକସ୍ଥଳୀରେ ଅତିରିକ୍ତ ଅମ୍ଳରସର ସୃଷ୍ଟି ହୁଏ । ଫଳରେ ପାକସ୍ଥଳୀରେ ଘା' ହୁଏ । ରକ୍ତଚାପ ଓ ମାନସିକ ବିକାର ଏହାର ଅନ୍ୟ ଏକ ଭୟାବହ ପରିଣତି ।

## ଧରାପଡ଼ନ୍ତି

ଦକ୍ଷିଣ କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ମାନସିକ ରୋଗବିଶାରଦ, ମନସ୍ତତ୍ତ୍ୱବିତ୍ ଓ ସମାଜବିଜ୍ଞାନୀ ଡ଼କ୍ଟର ଓ୍ୱାର୍ଲ୍ଟ ବୁହ୍ଲର କହନ୍ତି, "ମଜାଗପରେ ଯୋଗ ଦେଲାବେଳେ କେଉଁପରି ଲୋକ ସହଜରେ ଧରା ପଡ଼ିଯାନ୍ତି । ଜୀବନ ସଂଗ୍ରାମରେ ହାରିଯାଇ ନୈରାଶ୍ୟରେ ଭାଙ୍ଗିପଡ଼ିଥିଲେ ମଜାଗପରେ ମନ ଖୋଲି ଭାଗ ନେଇ ହୁଏନା । ସମାଜରେ କେହି ଯଦି ତାଙ୍କ ନ୍ୟାଯ୍ୟ ପ୍ରାପ୍ୟରୁ ବଞ୍ଚିତ ହୋଇଥାନ୍ତି ତାଙ୍କର ବିଦ୍ରୋହୀ ମନ କଥାକଥାକେ ବିକ୍ଷୋଦ୍‌ଗାର କରେ । ତେଣୁ ସେ ଧୀରସ୍ଥିର ଭାବେ ବ୍ୟଙ୍ଗ ବା ରହସ୍ୟରେ ଭାଗ ନେଇ ପାରନ୍ତି ନାହିଁ ।"

## ତିନି ଶ୍ରେଣୀର

ଖୁସିଗପ କରୁଥିବା ଲୋକଙ୍କୁ ସେ ତିନି ଭାଗରେ ବିଭକ୍ତ କରିଛନ୍ତି । ଯେଉଁମାନେ କେବଳ ଅବସର ବିନୋଦନପାଇଁ ଖୁସିଗପ କରନ୍ତି ସେମାନଙ୍କ ଜୀବନରେ ସ୍ଫୁର୍ତ୍ତିତା ଆସିଥାଏ । ତାଙ୍କର ବ୍ୟକ୍ତିତ୍ୱ ନିଷ୍କଳଙ୍କ । କାହାରି ଉପରେ ମାନ ଅଭିମାନ ନାହିଁ । ଜୀବନରେ ଖୁସିଗପ ଯେତିକି ଦରକାର ସେମାନେ ସେତିକି ମାତ୍ର ଉପଭୋଗ କରନ୍ତି । ମଜାଗପରେ ଯୋଗ ଦେବାକୁ ଯେଉଁମାନେ ଆଦୌ ରାଜି ନୁହନ୍ତି ସେମାନଙ୍କର ମନ ଏକ ରୁଦ୍ଧ କୋଠରି । ସେମାନେ କୌଣସି କଥା ଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି । ସବୁବେଳେ ବିପଦର ଆଶଙ୍କା କରୁଥାନ୍ତି । ଅନ୍ୟମାନଙ୍କ ପ୍ରତି ସେମାନଙ୍କର ଘୃଣା ଓ ଅବିଶ୍ୱାସ ଭରି ରହିଥାଏ । ନିଜକୁ ଖୁବ୍ ବଡ଼ କିଂବା ଶ୍ରେଷ୍ଠ ମନେ କରୁଥିବା କିମ୍ବା ପଦମର୍ଯ୍ୟାଦା ହାନିର ଆଶଙ୍କା କରୁଥିବା ଲୋକେଇ ଏଇ ଅବସ୍ଥାକୁ ଆସନ୍ତି ।

ତୃତୀୟ ଶ୍ରେଣୀର ଲୋକେ ଅତି ମାତ୍ରାରେ ଏଇ ମଜାଗପର ଭକ୍ତ । ସବୁବେଳେ ନିଜ ଘରେ କେବଳ ଦରବାର ଖୋଲି ବସିଥାନ୍ତି । ଏମାନଙ୍କର ଜୀବନ ଅତି ଅଗଭୀର । କେବେ କିଛି କରି ଫଳ ନ ପାଇ ଏମାନେ ଏଇ ଅବସ୍ଥାକୁ ଆସିଥାନ୍ତି । ନିଜର ପରାଜିତ ମନର ବୁଭୁକ୍ଷା ମେଣ୍ଟାଇବାପାଇଁ ଏମାନେ ସୁଚତୁର ଭାବେ ପରନିନ୍ଦା ଓ ପରଚର୍ଚ୍ଚା କରିପାରନ୍ତି । ଏମାନଙ୍କ ମନର କୌଣସି ଏକ ନିଭୃତ କୋଣରେ ପରାଜୟର ଆଶଙ୍କା ଲୁଚି ରହିଥିଲେ ମଧ୍ୟ ଏମାନେ ବାହାରକୁ ତାଙ୍କର ଅନ୍ତଶକ୍ତି ଆତ୍ମବିଶ୍ୱାସର ସୂଚନା ଦିଅନ୍ତି । ସବୁ ବିଷୟରେ ହାତ ଦେଇ ବସନ୍ତି ; କିନ୍ତୁ ନିଷ୍ଠା ବା ଏକାଗ୍ରତା ଅଭାବରୁ

ଏମାନଙ୍କ କାର୍ଯ୍ୟ କେବଳ ଆରମ୍ଭରେ ଉତ୍ସାହ ଦିଏ ଓ ସମାଲୋଚନାରେ ଶେଷ ହୁଏ ।

## ତୀକ୍ଷ୍ଣଧାର ଅସ୍ତ୍ର

ଏଥିପାଇଁ ମନସ୍ତତ୍ତ୍ୱବିତ୍‌ମାନେ କହନ୍ତି, ମଜଲିସ ଏକ ତୀକ୍ଷ୍ଣଧାର ଅସ୍ତ୍ର ସଦୃଶ । ଛୁରିରେ ତର୍ଣ୍ଣି କଣ୍ଟାଠାରୁ ଅସ୍ତ୍ର ଚିକିତ୍ସା ହେଲାପରି ମଜଲିସଦ୍ୱାରା ବ୍ୟକ୍ତିଙ୍କର ବିକାଶଠାରୁ ବିନାଶ ପର୍ଯ୍ୟନ୍ତ ହୋଇଥାଏ । ସୁନାମଧନ୍ୟ ମାନସିକ ରୋଗବିଶାରଦ ମାର୍ଟିନ୍ ଗ୍ରୋଟ୍‌ଜାହାନ କହନ୍ତି "ଜଣେ ବିଶ୍ଳେଷକ ହିସାବରେ ମଜଲିସ ଶୁଣିବାକୁ ମତେ ଭାରି ଭଲ ଲାଗେ । କାରଣ ଏଥିରେ ଅନେକ ସତ କଥା ଥାଏ । ମଣିଷ ଯେଉଁ କଥାଗୁଡ଼ିକ ସିଧା ପଚାରିଥିଲେ କହିବ ନାହିଁ ମଜଲିସରେ ଯୋଗ ଦେଲାବେଳେ ତାହା ଆପେ ଆପେ କହିପକାଏ । ଅଧିକାଂଶ ଲୋକ ସେମାନଙ୍କର ମନର ଭାବନା ମନରେଇ ଚାପି ରଖନ୍ତି । ଅତି ଅସହ୍ୟ ହେଲେ କେବଳ ନିଜର ବିଶ୍ୱାସୀ ବନ୍ଧୁଙ୍କୁ ହିଁ କହିଥାନ୍ତି ; କିନ୍ତୁ ମଜଲିସରେ ଯୋଗଦେଲେ ସେ ତାର ଦୁର୍ବଳତାଗୁଡ଼ିକୁ ବେଳେ ବେଳେ କହି ପକାଇ ମନକୁ ସଂପୂର୍ଣ୍ଣ ନିର୍ମଳ ଓ ହାଲୁକା କରେ । ମଜଲିସ ଭାବ ପ୍ରକାଶ ଓ ଆଦାନ ପ୍ରଦାନରେ ଯଥେଷ୍ଟ ସାହାଯ୍ୟ କରୁଥିବାରୁ ଗଣତାନ୍ତ୍ରିକ ଜୀବନଯାପନରେ ଏକ ଅବିଚ୍ଛେଦ୍ୟ ଅଙ୍ଗ । ବିଶିଷ୍ଟ କବି ଓ ସମାଲୋଚକ ଡବ୍ଲ୍ୟୁ ଏଚ. ଅଡେନ କହନ୍ତି "ଯିଏକି ଲୋକ ଅନ୍ୟମାନଙ୍କ କଥା ଜାଣିବାକୁ ଆଗ୍ରହୀ ହେବାଦ୍ୱାରା ସାରା ମଣିଷ ଜାତିକୁ ଭଲ ପାଇବାକୁ ଶିଖେ ।'

## ସାମାଜିକ ବାସନ୍ଦ

କେତେକ ଲୋକ ମଜଲିସରେ ଯୋଗ ଦେବାକୁ ଡରନ୍ତି; କାରଣ ଲୋକେ କାଳେ ତାଙ୍କୁ ହିଁ ଥଟ୍ଟା କରି ବସିବେ । ଏହା ନିତାନ୍ତ ବୋକାମି । ନିଜର ଦୋଷ ତ୍ରୁଟି ନିଜେ ନ ଜାଣିଲେ ତାର ସଂଶୋଧନ ହେବ କିପରି ? କିଏ କଣ କେବେ ସିଧାସଳଖ ଆସି ତମ ଦୋଷ ଦୁର୍ଗୁଣ ତମକୁ କହିବ? ମଜଲିସ ଭିତରେ ହିଁ ଲୋକେ ଏହା କହିବେ । ଫଳରେ ସମାଜରେ କିପରି ଚଳିବାକୁ ହେବ ମଜଲିସରୁ ହିଁ ମଣିଷ ଶିଖିବ । ଯଦି ତମର ଗୁଣ ଅବଗୁଣ, ଭଲ ମନ୍ଦ, ଉନ୍ନତି ଅବନତି ଜାଣିବାକୁ ତମର ପଡ଼ୋଶୀ ଟିକିଏ ଆଗ୍ରହୀ ବା ଈର୍ଷାନ୍ୱିତ ହୁଏନା ତାହେଲେ ତମେ ଏକ ସାମାଜିକ ବାସନ୍ଦ ଭିତରେ ହିଁ ବଞ୍ଚୁଛ । ଏଭଳି ବଞ୍ଚିବାରେ ବା ଆନନ୍ଦ କଣ ? ଯା'ର ସାଇପଡ଼ିଶା ନ ହିଁ ତା ପକ୍ଷରେ ବଞ୍ଚିବା ଏକରକମ ଅଭିଶାପ ସଦୃଶ । ସମାଜ ବିଜ୍ଞାନୀମାନେ ସାଇପଡ଼ିଶାକୁ ବୁଝାଇ-

ବାକୁ ଯାଇ ନହାନ୍ତି, ଯେତେଦୂର ପର୍ଯ୍ୟନ୍ତ ଲୋକେ ତମ କଥା ପକାନ୍ତି ସେ ପର୍ଯ୍ୟନ୍ତ ତମର ସାଇପଡ଼ଶା ଲମ୍ବି ଛନ୍ତି ।

## ଅଳ୍ପ ସମୟରେ ବେଶୀ କାମ

ପ୍ରକୃତରେ ମଜାଗପରେ ଯେ ଯୋଗ ଦ[illegible]ନା ତର[illegible]ନ୍ତି କହ[illegible]ନ ଥାନ୍ତି । ତମେ ଯେତିକି ମଜାଗପ କରିବ ଲୋକେ ତମ ପ୍ରତି ସେତିକି ଅନୁରକ୍ତ ହେବେ । ମଜାଗପ ଜରିଆରେ ମଣିଷ ସାମାଜିକ ବ୍ୟବହାର ସମ୍ବନ୍ଧରେ ଅନେକ କଥା ଜାଣେ । ଯେତେ ବଡ଼ଲୋକ ହେଲେ ବି ଯଦି ତମେ ଉପଯୁକ୍ତ ସାମାଜିକ ବ୍ୟବହାର ନ ଜାଣ, ପାଞ୍ଚଜଣଙ୍କୁ ହସି ପଦେ କଥା ନ କୁହ ତମର ବଡ଼ଲୋକରେ ସେମାନଙ୍କର ଯାଏ ଆସେ କଣ ? ସେଇପରି ତମ ସମ୍ବନ୍ଧରେ ଲୋକେ କ'ଣ କହୁଚନ୍ତି ଭାବି ଆଶଙ୍କାରେ ବ୍ୟସ୍ତହେବା ଦରକାର ନାହିଁ । କାରଣ ଭଲଟାୟାର କହିଛନ୍ତି "ଭଲକାମ କଲେ ଯାଇଁ ତମେ ଅନ୍ୟଙ୍କୁ ତମ ସମ୍ବନ୍ଧରେ ଭଲ କହିବାକୁ ବାଧ କରିବ ।"

ବେଳେ ବେଳେ ଆମେ ଧ୍ୱନି ଉଠାଉ ଯେ ଖୁସିଗପ କରିବାକୁ ଆମର ବେଳ ନାହିଁ ; କିନ୍ତୁ ଅଳପ ସମୟରେ ବେଶିକାମ କରିବାକୁ ହେଲେ ଏକ ସୁସ୍ଥମନ ଓ ରୁଚିକର ସାମାଜିକ ପରିସ୍ଥିତି ଏକାନ୍ତ ଆବଶ୍ୟକ । ଏଥିପାଇଁ ମଜାଗପର ଆବଶ୍ୟକତା ସମ୍ବନ୍ଧରେ ଆଉ କଣ ବେଶି ଦରକାର ; କିନ୍ତୁ ମନେ ରଖିବାକୁ ହେବ ଆମେ ସବୁବେଳେ କାର୍ଯ୍ୟବ୍ୟସ୍ତ ରହି ମଜାଗପରେ ଯୋଗ ନ ଦେବାଦ୍ୱାରା ସୁଖଶାନ୍ତିକୁ ଯେପରି ଦୂରେଇଦେଉ ଜୀବନରେ କେବଳ ଖୁସି ଗପକୁ ସମ୍ବଳ କରିବସିଲେ ଠିକ୍ ସେଇପରି ସୁଖଶାନ୍ତିଠାରୁ ଦୂରେଇ ଯାଉ ।

— — —




## ଯୌବନ ଭିକ୍ଷା

ବୁଢ଼ା ତ ସମସ୍ତେ ହେବେ । ନ ହେବ କିଏ ? ଦିନେ ସମସ୍ତଙ୍କର ଦୃଷ୍ଟିଶକ୍ତି କମିବ । କେଶ ଧଳା ହେବ ବା ଝଡ଼ିଯିବ । ଚମ କୁଞ୍ଚି ହୋଇ ଧୁଳୁଡ଼ି ଯିବ । ଦାନ୍ତ ହଲିବ, ପାଚି ପାକୁଆ ହେବ । ଏମିତି କ୍ରମେ କ୍ରମେ ବୟସର ଲକ୍ଷଣ ଶରୀରରେ ଫୁଟିଉଠିବ । ଦିନେ ରାଜା ଯଜାତି ତାଙ୍କ ଦେହରେ ଏହି ଲକ୍ଷଣ-ଗୁଡ଼ିକ ଦେଖି ଅଥୟ ହୋଇପଡ଼ିଲେ । ତାଙ୍କ ଯୌବନ ଫେର ପାଇବାପାଇଁ ବ୍ୟାକୁଳ ହେଲେ । ଏପରିକି ନିଜର ଅଲିଅଳି କୋଡପୋଛା ପୁଅ ପାଖରେ ଯୌବନ ଭିକ୍ଷା କଲେ । ସୁକୁମାର ସୁଠାମ ରାଜପୁତ୍ର ପିତୃଭକ୍ତିର ପରାକାଷ୍ଠା ଦେଖାଇ ନିଜର ଯୌବନ ବିନିମୟରେ ଅନ୍ତିମ ଜୀବନର ଜରାଜୀର୍ଣ୍ଣ ଅବସ୍ଥା ଗ୍ରହଣ କଲେ ; କିନ୍ତୁ ଯଜାତିଙ୍କର ଭୋଗ-ଲିପ୍ସା ବା କାମନା-ବହ୍ନି ପ୍ରଶମିତ ହେଲି ନାହିଁ । ସେ ଦେଖିଲେ ସମୟ-ସ୍ରୋତର ବିପରୀତ ଦିଗରେ ଗତି କରିବା ମନୁଷ୍ୟର ପ୍ରକୃତ ଧର୍ମ ନୁହେଁ । ତେଣୁ ପୁଅଙ୍କୁ ତା'ର ଯୌବନ ଫେରସ୍ତ ଦେଇ ପୁନରାୟ ବାର୍ଦ୍ଧକ୍ୟ ବରଣ କଲେ । ଏହି ଗଳ୍ପରୁ ମନେହୁଏ, ଜଣେ ବିବେକୀ ସ୍ୱାର୍ଥାନ୍ଧ ହୋଇ ସମୟକୁ ଅଟକାଇବାକୁ ଚାହେଁନା । ହସି ହସି ସମୟର ଅନୁକୂଳ ସ୍ରୋତରେ ଭାସିଯିବା ତା'ର ଲକ୍ଷ୍ୟ ।

## ମହାମନ୍ତ୍ର

ସେହିପରି ଗୌତମ ଜଣେ ବୁଢ଼ା, ଗୋଟିଏ ରୋଗୀ, ଗୋଟିଏ ଶବ ଓ ଜଣେ ସନ୍ନ୍ୟାସୀଙ୍କୁ ଦେଖି ରାଜପ୍ରାସାଦ ତ୍ୟାଗ କଲେ । ତାଙ୍କର ଧାରଣା

ହେଲା ଜରା, ବ୍ୟାଧି ଓ ମୃତ୍ୟୁର ଯନ୍ତ୍ରଣାରୁ ଦୂରେଇ ରହିବାକୁ ହେଲେ ସନ୍ନ୍ୟାସ ଏକମାତ୍ର ପାଥେୟ ; କିନ୍ତୁ ହେଲା କ'ଣ ? ସେ ତପସ୍ୟା କଲେ, ସମାଧିସ୍ଥ ହେଲେ ବର୍ଷ ବର୍ଷ ଧରି ଚିନ୍ତାକଲେ । ଶେଷରେ ସ୍ଥିର କଲେ କେତୋଟି ମାନବିକ ଧର୍ମରେ ଦୀକ୍ଷିତ ହେଲେ, ଏହି ସାଂସାରିକ ଯନ୍ତ୍ରଣା ମନୁଷ୍ୟକୁ ବିଚଳିତ କରିବ ନାହିଁ । ଅହିଂସା, ସତ୍ୟ ଓ ପ୍ରେମ ମନ୍ତ୍ରରେ ଦୀକ୍ଷିତ ହେଲେ ମଣିଷ ହସି ହସି ମରିବ ।

ବୁଦ୍ଧଙ୍କର ମହାପ୍ରୟାଣ ହେଲା । ଅନ୍ୟ ମହାତ୍ମାମାନେ ଆବିର୍ଭୂତ ହେଲେ । ସମସ୍ତେ ସେହିଭଳି ଏକ ତାତ୍ତ୍ୱିକ ଦୃଷ୍ଟି-କୋଣରୁ ଦାର୍ଶନିକ ଭଙ୍ଗୀରେ ଜରା, ବ୍ୟାଧି ଓ ମୃତ୍ୟୁଠାରୁ ଦୂରେଇଯିବାକୁ କେତେକ ଉପାୟ ବତେଇଲେ ।

## ଅଙ୍ଗ ବଦଳ

ଏହି ଗମ୍ଭୀର ଦାର୍ଶନିକ ତତ୍ତ୍ୱ ଆଲୋଚିତ ହେଲାବେଳେ ସାଧାରଣ ଜନତା ମନ୍ତ୍ରମୁଗ୍ଧ ହୋଇଗଲେ; କିନ୍ତୁ ତଥାପି ତା'ର ଦାନ୍ତ ହଲିଲେ ସେ ଷୋଳ ଟଙ୍କା ଧରି ଡାକ୍ତର ଦୁଆରେ ବ୍ୟସ୍ତ ହେଲା । ମହାଭୃଙ୍ଗ ତୈଳ ବିଜ୍ଞାପନରେ ତନ୍ଦା ଲୋକେ ଭୁଲିଗଲେ । ଯାହାର ଅଣ୍ଟା ବା କଟିବଥା ହେଲା, ତାଙ୍କ ପାଖରେ ବୁଦ୍ଧଙ୍କ ବାଣୀ ଅପେକ୍ଷା ହୋମିଓପାଥଙ୍କ ପରାମର୍ଶ ଅମୂଲ୍ୟ ସମ୍ପଦ ହେଲା । କେବଳ ଅଭାବଗ୍ରସ୍ତ, ବୁଭୁକ୍ଷିତ ଓ ଅରକ୍ଷିତମାନେ ମହାତ୍ମା ବା ଜଗଦୀଶଙ୍କ ଅମୃତବାଣୀକୁ ଆଶାକରି ଯନ୍ତ୍ରଣା ସହିବାକୁ ଅଭ୍ୟସ୍ତ ହୋଇଗଲେ । ଅନ୍ୟମାନେ ବିଜ୍ଞାନ ଓ ବିଜ୍ଞାପନ ପଛରେ ଧାଇଁଲେ ।

ଯାହାର ଆଖି ଅକାମୀ ହୋଇଗଲା, ତା'ଠାରେ ଡାକ୍ତର ନୂଆ ଆଖି ଖଞ୍ଜିଦେଲେ । ଅଶି ବର୍ଷର ପାକୁଆବୁଢ଼ା ତାର ଗୋଟିଏ କୃତ୍ରିମ ଦାନ୍ତ ଦେଖାଇ ହସିଲା । ଯେଉଁ ସାର ଜଓ୍ୱାନର ହାତ କଟିଯାଇଥିଲା ନିପୁଣ୍ୟପୂର୍ବକରେ ସେ ଇଲେକ୍‌ଟ୍ରନିକ ହାତ ଲଗାଇ ଦୋକାନରେ ବିକାକଣା କରୁଛି । ଆମେରିକାର ଡାକ୍ତର ମାଇକେଲ ଡବାକେ ଯେଉଁ ଲୋକର ହୃତ୍‌ପିଣ୍ଡ ବଦଳେଇ ଦେଇଥିଲେ, ସେ ଏବେ ଅଳ୍ପକେ ଧକ୍କାର ଦୁର୍ଘଟଣାରୁ ରକ୍ଷା ପାଇ ଗଲା । ସେହି ଫ୍ରୁଗ୍ରେପାସ୍ତ ଜଣକ ଆଜକୁ ୩ ବର୍ଷ ହେଲା ଅନ୍ୟର ହୃଦୟ ଧରି ବୁଲୁଛନ୍ତି । ଡାକ୍ତର ଦେଖିଲେ ୨୦ ବର୍ଷ ବୟସ୍କ ଜ୍ଞାନଭିଆଲୋ ଯଦି ତାଙ୍କ ମାଆ ପେଟରୁ ଧରି ଆସିଥିବା ନିଜ ହୃତ୍‌ପିଣ୍ଡ ଉପରେ ନିର୍ଭର କରନ୍ତି ତାଙ୍କୁ ଅବିଳମ୍ବେ ଏ ସଂସାରରୁ ବିଦାୟ ନେବାକୁ ହେବ । ତେଣୁ ୧୯୬୮ ସେପ୍ଟେମ୍ବର ୧୮ ତାରିଖରେ ତାଙ୍କଠାରେ ଅନ୍ୟ ଜଣଙ୍କର ହୃତ୍‌ପିଣ୍ଡ ଖଞ୍ଜିଦିଆଗଲା ।

ଈଶ୍ୱରଙ୍କ କୃପାରୁ ଓ ଡାକ୍ତରଙ୍କ ବଚକ୍ଷଣତାରୁ ସେ ଏପର୍ଯ୍ୟନ୍ତ ସୁସ୍ଥ ଓ ସବଳ ଅଛନ୍ତି । ସେ ମୃତ୍ୟୁମୁଖରୁ ରକ୍ଷା ପାଇଛନ୍ତି ବା ତାଙ୍କଠାରୁ ମୃତ୍ୟୁକୁ ଦୂରେଇ ନିଆଯାଇଛି ।

ପୁରୁଣା ସାଇକେଲରେ ପାର୍ଟ ଖଞ୍ଜିଲାପରି ମଣିଷ ତାର ଶରୀରରେ ମରା-ମତି କରି ବା ଅଙ୍ଗ ବଦଳ କରି କୌଣସିମତେ ଚଳୁଛି । ମାଆ ପେଟରୁ ଅଙ୍ଗ ଗୁଡ଼ିକୁ ନଜର କରି ଶ୍ୱେତସାର ଓ ପୁଷ୍ଟିସାର ଖାଦ୍ୟରେ ହୃଷ୍ଟପୁଷ୍ଟ କରିଥିଲି, ସମୟାନୁକ୍ରମେ ସେ ସବୁର ମୋହ ତାକୁ ତ୍ୟାଗ କରିବାକୁ ହେଲା । ଅନ୍ୟ-ଠାରୁ ଅଙ୍ଗଭିକ୍ଷା କରି ସେ ଚଳବିଚଳ ହେଉଛି । ମୂତ୍ରାଶୟ, ହୃତ୍‌ପିଣ୍ଡ, କଲିଜା, ବୃକ୍‌କ, ଦାନ୍ତ, ଚକ୍ଷୁ ଓ ହାତ ସବୁ ବଦଳ ହାରିଲାଣି । କେବଳ ବାପ ମା ଦେଇଥିବା ନାମଟି ଧରି ସେ ଆମର ପରିଚିତ ବ୍ୟକ୍ତି ହୋଇ ଛନ୍ତି । ବୁଢ଼ା, ରୋଗୀ ଓ ମୃତ୍ୟୁଶଯ୍ୟାଶାୟୀଙ୍କ ପାଇଁ ଡାକ୍ତର ଓ ବୈଜ୍ଞାନି-ମାନଙ୍କର ଏହା ଏକ କାମଚଳା ଯୋଜନା ।

## ଜରା ପ୍ରଭାବ

ଏହା ଛଡ଼ା ବୈଜ୍ଞାନିକମାନେ ଅନ୍ୟ ଏକ ଯୋଜନାରେ ମଧ୍ୟ ମାତିଛନ୍ତି । ସେମାନେ ଭାବୁଛନ୍ତି, ଅଙ୍ଗପ୍ରତ୍ୟଙ୍ଗ ଖଞ୍ଜିବା ଏକ ମାମୁଲି ବ୍ୟବସ୍ଥା । ଏହା ଉପରେ ନିର୍ଭର କରିବା ଯେତିକି ବିପଦ-ସଙ୍କୁଳ, ସେତିକି ବ୍ୟୟସାଧ୍ୟ । କ'ଣ କଲେ ଶରୀର ମଧ୍ୟରେ ରାସାୟନିକ ଓ ଜୈବିକ କ୍ରିୟାରେ କୌଣସି ବ୍ୟତିକ୍ରମ ହେବ ନାହିଁ, ମଲା ପର୍ଯ୍ୟନ୍ତ ମଣିଷ ଯୁବକ ପରି ରହିବ, ବୁଢ଼ା ହେବ ନାହିଁ । ଆଖି ଚଶମାରେ ବନ୍ଧା ପଡ଼ିବ, ନଇଁ ନଇଁ ଚାଲିବ ନାହିଁ କି ଚାଲିବାପାଇଁ ବାଡ଼ି ଧରିବ ନାହିଁ । ମଲା ପର୍ଯ୍ୟନ୍ତ ନଡ଼ିଆ ଚୋବେଇ ଖାଇ ପାରିବ । ବୁଢ଼ା ଲୋକର ବଳିଲା ବଳିଲା ବାହାକୁ ଅନେଇଲେ ଯୁବକ ବି ଶଙ୍କିଯିବ ।

ବାସ୍ତବିକ ଦେଖିଲେ ୧୦ ବର୍ଷ ପର୍ଯ୍ୟନ୍ତ (ବ: ୧ ରୁ ବ: ୧୦) ମଣିଷ ପିଲା ତାକୁ କେହି ପଚାରନ୍ତି ନାହିଁ, ୧୫ ବର୍ଷ ଯାଏ (ବ: ୧୦ରୁ ବ: ୨୫) କେବଳ ଆନ୍ଦୋଳନ ଓ ଅଧ୍ୟୟନରେ ମାତେ, ମାତ୍ର ୧୦ ବର୍ଷ (ବ: ୨୫ରୁ ବ: ୩୫) ଜୀବନ ଉପଭୋଗ କରେ ; ଯୁବକର ସାହସ ନେଇ ବ୍ୟବସାୟ ଓ ଚାକିରି କରେ । ତା' ପରେ ସରକାରୀ ହିସାବରେ ୩୫ ବର୍ଷ (ବ: ୩୫-ବ: ୭୦) ବୁଢ଼ା । ତାଠାରୁ କୌଣସି ସାହସିକ, ବିପ୍ଲବାତ୍ମକ, ରୋମାଞ୍ଚକର ବା ଫଳ-ପ୍ରସୂ ଯୋଜନା ସରକାର ଆଶା କରନ୍ତି ନାହିଁ । ସେଥିପାଇଁ ଏ ବିଷୟରେ ତାଙ୍କୁ କୃତଜ୍ଞ ବୃତ୍ତି ବ୍ୟବସ୍ଥାରେ ବିଦେଶକୁ ପଠାଯାଏ । ଯେଉଁମାନେ

ଜୀବବିଜ୍ଞାନରେ ଗବେଷଣା କରୁଛନ୍ତି ସେମାନେ କହନ୍ତି, ମଣିଷ ଜୀବନର ଯଥେଷ୍ଟ ଅପଚୟ ହେଉଛି । ୭୦ ବର୍ଷରୁ ୩୫ ବର୍ଷ ପ୍ରାପ୍ତ ଅଧାଅଧି ମଣିଷଙ୍କୁ ଜରାବସ୍ଥାରେ କଟେଇବାକୁ ହେଉଛି । ସେମାନଙ୍କର ଗବେଷଣା ସଫଳ ହେଲେ ସେମାନେ ଶାରୀରିକ କ୍ରିୟାକୁ ଏପରି ବଦଳାଇ ଦେବେ ଯେ, ମଣିଷ ମଲା ପର୍ଯ୍ୟନ୍ତ ଆଉ ବୁଢ଼ା ହେବ ନାହିଁ ।

## ଆଠଟି ଉପାୟ

ଏବେ ଜଣେ ରୁଷିଆର ଅଧ୍ୟାପକ ଶର୍ଗନ୍ ବ୍ରୋଖଲିନ ବୁଢ଼ାମାନଙ୍କୁ କେତେକ ପରାମର୍ଶ ଦେଇଛନ୍ତି । ତାଙ୍କ ପରାମର୍ଶ ମାନିଲେ ବୋଧହୁଏ ବୁଢ଼ାମାନେ ଅଧିକ ଦିନ କାର୍ଯ୍ୟକ୍ଷମ ଓ ସମର୍ଥ ହୋଇ ଚଳବଚଳ କରିପାରିବେ । ତାଙ୍କ ମତରେ, ମଣିଷମାନେ ସେମାନଙ୍କ ବ୍ୟକ୍ତିଗତ କାରଣରୁ ଭିନ୍ନ ଭିନ୍ନ ସମୟରେ ବୁଢ଼ା ହୁଅନ୍ତି । କିଏ ୫୦ ବର୍ଷରେ ଟୋକାପରି ଦିଶେ ତ କିଏ ୨୫ ବର୍ଷରେ ବୁଢ଼ା ପାଲଟିଯାଏ । ଏହା ମଣିଷର ଚରିତ୍ର, ଦୃଷ୍ଟିଭଙ୍ଗୀ, ବିଚାର, ବୁଦ୍ଧି, ଦୈନନ୍ଦିନ କାର୍ଯ୍ୟ, ପାରିବାରିକ ସମ୍ପର୍କ, ଅର୍ଥନୈତିକ ଓ ସାମାଜିକ ପରିବେଶ ପ୍ରଭୃତି ଉପରେ ନିର୍ଭର କରେ । ବୁଢ଼ା ହେଲେ ଆଠଟା କଥା ମନେ ରଖିବାକୁ ହେବ ବୋଲି ସେ ପରାମର୍ଶ ଦେଇଛନ୍ତି ।

(୧) ପ୍ରଥମେ ବିଚାର କର, ତମର ଦୈନନ୍ଦିନ ଜୀବନଯାପନ ପ୍ରଣାଳୀ ବଦଳାଇବାକୁ ସମୟ ହେଲାଣି କି ? ତମ ଅତୀତ ଜୀବନକୁ ଟିକିଏ ଆଖି ଫେରାଅ । ଆଜିପର୍ଯ୍ୟନ୍ତ ତମେ କ'ଣ କ'ଣ କରିଛ ? ବର୍ତ୍ତମାନ ତ ବୟସ ହୋଇଗଲା, ସେହି ଅନୁସାରେ କ'ଣ କରିପାରିବ, ତାହା ସ୍ଥିର କର । କୁକୁଡ଼ ପହଁର କହୁଛ ଲାଭ ନାହିଁ । ଲୋକଙ୍କୁ ଠକୁ ଠକୁ ନିଜେ ଠକିଯିବ । ଯେ ପ୍ରକାର ଆମୋଦ ପ୍ରମୋଦରେ ମାତିଥିଲ, ବର୍ତ୍ତମାନ ହୁଏତ ତାହା ସ୍ୱାସ୍ଥ୍ୟୋ-ପଯୋଗୀ ହୋଇ ନ ପାରେ । ଏହା ସ୍ଥିର କରି ନ ପାରିଲେ ତମ ଅନ୍ତରଙ୍ଗ ଡାକ୍ତରଙ୍କ ପରାମର୍ଶ ନିଅ ।

(୨) ତମ ବ୍ୟବହାରରେ କୌଣସି ଅବାଞ୍ଛିତ ପରିବର୍ତ୍ତନ ଘଟି ଥିବାର ଲକ୍ଷ୍ୟ କରୁଛ କି ? କେତେକ ସାମାନ୍ୟ ଘଟଣା ନେଇ ତମେ ଅତ୍ୟନ୍ତ ଭାବ ବିହ୍ୱଳ ହୋଇ ଉଠୁଛ ?' ସାମାନ୍ୟ ଟିକିଏ ବ୍ୟତିକ୍ରମ ପାଇଁ ବିରକ୍ତ ହୋଇ ପଡ଼ୁଛ ?' ଯେତିକି ମାତ୍ରାରେ ଉପୁଭୀତ ଓ କାତର ହେଉଛ ସେତିକି ମାତ୍ରାରେ ହୁକୁମ ଜାହିର କରିବାକୁ ବ୍ୟସ୍ତ ହୋଇ ପଡ଼ୁଛ ? ଏଥିପାଇଁ

ସବୁବେଳେ ମନେ ହେଉ—ଏଭଳି ବ୍ୟଗ୍ର ବା ବିହ୍ୱଳ ହେବା ଉଚିତ ନୁହେଁ ।" ତାହା ହେଲେ ଅନେକ ହେଉରେ ଅଯଥା ଉତ୍ତେଜନାରୁ ରକ୍ଷା ପାଇବ ।

(୩) ଏ ବୟସରେ କ'ଣ କରିପାରିବ, ଏକ ଯୋଜନା କରିନିଅ । ଏଣିକି ଶୀଘ୍ର କ୍ଲାନ୍ତ ହେବ । କାର୍ଯ୍ୟଦକ୍ଷତା ଯଥେଷ୍ଟ କମିଯିବ । ଏସବୁ ବିବେଚନା ନ କରି ଖାଲି ଦାୟିତ୍ୱ ବୋଝ ମୁଣ୍ଡାଇଲେ ତାର ଦୁଶ୍ଚିନ୍ତାରେ ତୁମ ହୃତ୍‌ପିଣ୍ଡ ଦୁର୍ବଳ ଓ ଅକ୍ଷମ ହୋଇ ପଡ଼ିବ । ଏଣେ ଯଦି ଉପଯୁକ୍ତ କର୍ତ୍ତବ୍ୟ ଭୁଲି ଅଯଥା ବିଶ୍ରାମ ନେବାକୁ ଇଚ୍ଛାକର, ତାହା ହେଲେ ଦିନକୁ ଦିନ ଦିନ ଦୁର୍ବଳତାରେ ଅଭ୍ୟସ୍ତ ହୋଇପଡ଼ିବ । ଫୁଲଫାଙ୍କିଆ ପାଲଟିଯିବ । ଏଥିପାଇଁ ଏକ ମଧ୍ୟମାର୍ଗ ସ୍ଥିର କର । ଏଣିକି କି ପ୍ରକାର ବ୍ୟାୟାମ କରିବ, ବାଛିନିଅ । ଆବଶ୍ୟକ ହେଲେ ଡାକ୍ତରଙ୍କ ପରାମର୍ଶ ନିଅ ।

(୪) ଅପେକ୍ଷାକୃତ ସହଜ କାର୍ଯ୍ୟ କରିବାକୁ ବୋଧହୁଏ ସମୟ ଆସିଗଲା । ଜଗଦ୍‌ବିଖ୍ୟାତ ଡକ୍ଟର ଆଇ. ଉ. ଡେଭିଡ଼୍‌ଭୋଭିସ୍କି କହିଛନ୍ତି"ଯେ ବୁଢ଼ା ହେବାକୁ ଇଚ୍ଛା ନ କରି ଶେଷ ନିଃଶ୍ୱାସ ଛାଡ଼ିବା ପର୍ଯ୍ୟନ୍ତ କେବଳ କାର୍ଯ୍ୟରତ ରହନ୍ତି, ତାଙ୍କ ଜୀବନ କ୍ଷୀଣ ହୁଏନାହିଁ ବରଂ ଲମ୍ବିଯାଏ । ବରଂ ଯେ ଆରାମରେ ପେନ୍‌ସନ୍ ନେଇ କେବଳ ଅତୀତ ଜୀବନର କାହାଣୀ କହି କହି ବୁଲନ୍ତି ସେ ଅଧିକ ଦିନ ବଞ୍ଚନ୍ତି ନାହିଁ ।" ଏହା ସାଧାରଣ କଥା ସତ, କିନ୍ତୁ ବ୍ୟକ୍ତିବିଶେଷରେ ପ୍ରଯୁଜ୍ୟ ନୁହେଁ । ନିଜର ସ୍ନାୟୁସଂସ୍ଥା ଓ ହୃତ୍‌ପିଣ୍ଡର ସାମର୍ଥ୍ୟ ବିଚାର କରି ଯୋଜନା ତିଆରି କର ।

(୫) କି ପ୍ରକାର ଅବସର ବିନୋଦନ କରିବ, ତାହା ସ୍ଥିର କରିନିଅ । ବଗିଚା କାମ କରିବା, ମାଟି ଖୋଳିବା ବା ମୁକ୍ତ ବାୟୁରେ ହାଲୁକା କାମ କରିବା ସ୍ୱାସ୍ଥ୍ୟପକ୍ଷରେ ହିତକର । ଏଥିରୁ ଆନନ୍ଦ ନ ମିଳିଲେ ବନଶୀ ପକାଅ, ଶିକାର କର ବା ସଞ୍ଜ ସକାଳେ ବୁଲାବୁଲି କର । କ୍ଳାନ୍ତ ନ ହୋଇ ଯେତିକି ଆମୋଦଦାୟକ ଶ୍ରମ କରିହେବ କରିବା ବାଞ୍ଛନୀୟ ।

(୬) କିପରି ନିଜକୁ ଚଳେଇ ନେଇ ପାରୁଛ, ତାହା ଲକ୍ଷ୍ୟରଖ । ସୁଠାମ ସ୍ୱାସ୍ଥ୍ୟର ଏକମାତ୍ର ଲକ୍ଷଣ ତୁମେ କିପରି ଦିଶୁଛ । କୁଜା ହୋଇ ବସୁଛ କି ? ଠେଙ୍ଗା ପରି ସିଧା ଚାଲୁଛ ତ ? ତୁମର ଗଢ଼, ବ୍ୟବହାର ଓ କଥାବାର୍ତ୍ତା ତୁମକୁ ବୁଢ଼ା କରିଦେବ । ସ୍ଫୁର୍ତ୍ତି ବୟସରେ କେବଳ ଯୁବକଙ୍କର ଏକଚାଟିଆ

ଅଧିକାର ନୁହେଁ; ସୁନ୍ଦ୍ରଂଲେ ତୁମେ ବ ସେଥିରେ ଭାଗ ନେଇପାରିବ । ନିଜର ଦକ୍ଷତା ବଢ଼ାଇ କରି ଏ ସବୁରେ ଯୋଗଦାନ କର ।

(୭) ଠିକ୍ ସମୟରେ ଯେତିକି ଶୋଇବା କଥା ଶୁଅ । ସ୍ନାୟବିକ ଓ ମାନସିକ ଅବସ୍ଥାକୁ ସତେଜ ରଖିବାପାଇଁ ଏହା ଏକାନ୍ତ ଆବଶ୍ୟକ । ଅନିଦ୍ରା ଦୋଷ ହେଉଥିଲେ ଗରମ ପାଣିରେ ଗାଧୋଅ, ସଞ୍ଜବେଳେ ବୁଲାବୁଲି କର । ମୁକ୍ତ ପବନରେ ଝରକା ଖୋଲି ଶୋଇବାକୁ ଅଭ୍ୟାସ କର ।

(୮) ବେଶଭୂଷାର ଯତ୍ନ ନିଅ । ତୁମ ବେଶଭୂଷା ଅନୁସାରେ ଲୋକେ ତୁମକୁ ଗ୍ରହଣ କରିବେ । ପରିଷ୍କାର ପରିଚ୍ଛନ୍ନ ଅଭ୍ୟାସ ତୁମକୁ ବୃଦ୍ଧାବସ୍ଥାଠାରୁ ଦୂରେଇ ରଖିବ । ବୁଢ଼ା ହେଲିବୋଲି ଯାଇଛା ତାହା ପୋଷାକ ପିନ୍ଧିବା ଏକ ବୋକାମି । ଶାରୀରିକ ଓ ମାନସିକ ସ୍ୱାସ୍ଥ୍ୟର ଯତ୍ନ ନେଲେ ତୁମେ ଅଧିକ ଗ୍ରହଣୀୟ ହେବ । ଏହି ଆଠଟି ଉପାୟ ଅବଲମ୍ବନ କଲେ ଯେ କେହି ବୃଦ୍ଧ ବାର୍ଦ୍ଧକ୍ୟରେ ଆକ୍ରାନ୍ତ ହୋଇ ବ୍ୟତିବ୍ୟସ୍ତ ହେବନାହିଁ ।

— — —

# କାମନକରି ଥକିପଡ଼

## ସମସ୍ତେ ଥକା

କାମ କରି କରି ଆମେ ଥକିପଡ଼ୁ, କାମ ନ କଲେ ବି ଥକିପଡ଼ୁ । ଆମେ କାହିଁକି ଥକିପଡ଼ୁ ? ସେ ବିଷୟରେ ଲୋକେ ଗବେଷଣା କରୁଛନ୍ତି । ସେମାନଙ୍କ ମଧ୍ୟରୁ କେତେକ ଡାକ୍ତର ଓ କେତେକ ମନସ୍ତତ୍ତ୍ୱବିତ୍ । ସେମାନେ ତାହା ହେଲେ କଣ କହୁଛନ୍ତି ? ତାଙ୍କ କଥା ଶୁଣିଲେ ବୋଧହୁଏ ଆମେ ଆଉ ଏତେ ଥକିପଡ଼ିବା ନାହିଁ ।

ଆମେରିକା ଡାକ୍ତରମାନେ ହିସାବ ଦେଇଛନ୍ତି ଯେ ସେମାନଙ୍କ ପାଖକୁ ଯେତେ ରୋଗୀ ଆସନ୍ତି ତାର ଅଧାଅଧି କହନ୍ତି ଯେ ସେମାନେ ଥକିପଡ଼ୁଛନ୍ତି । ଫଳରେ ବେଶୀ କାମ କରି ହେଉନାହିଁ ଏବଂ କାମ ନ କଲେ ମଧ୍ୟ ରୋଗର ଉପଶମ ନାହିଁ । ସେହି ରୋଗୀମାନଙ୍କର ଦୁଃଖ ଶୁଣୁ ଶୁଣୁ ଡାକ୍ତରବି ଥକିପଡ଼ୁଛନ୍ତି । କେବଳ କାମ ଚଳାଇବା ପାଇଁ ରୋଗୀ ଆମ୍ଫିଟାମିନ୍ ବଟିକା ଖାଉଛନ୍ତି । ତାକୁ ଖାଇଲେ ମନ ଟିକିଏ ସତେଜ ହୋଇ ଉଠେ, କେତେ ମିନିଟ୍ ପୂର୍ତ୍ତି ଲାଗେ । ତା'ପରେ ଯଥା ତଥା । ହିସାବରୁ ଜଣାପଡ଼େ ଆମେରିକା ଲୋକେ ବର୍ଷକୁ ପ୍ରାୟ ୩୫୦୦ଟନ୍ ଓଜନର ଆମ୍ଫିଟାମିନ୍ ବଟିକା ଖାଆନ୍ତି ।

କିନ୍ତୁ ଆମର ଏଠି ଏ ବଟିକାର ଏତେ ପ୍ରଚଳନ ନାହିଁ । ଥିଲେବି କିଣିବାକୁ ପାଖରେ ପଇସା ନାହିଁ । ତା'ଛଡ଼ା ଥକିପଡ଼ିବା ଏଠି ଏକ ମାରାତ୍ମକ ବ୍ୟାଧି ବୋଲି ଗଣା ହୁଏ ନାହିଁ । ଏହା ଆମ ଦେଶରେ ଏକ ସ୍ୱାଭାବିକ ଅବସ୍ଥା । ତେଣୁ ବେଳେ ବେଳେ ଦେଖିବାକୁ ମିଳେ ଯେ ଦପ୍ତରୀ ଟୁଲ୍‌ରେ ବସି ବସି ଶୋଇଯାଇଛି । ଅଫିସ ବାବୁ ଫାଇଲକୁ ଚକଆ କରି ଘୁମାଇଛନ୍ତି । ହାକିମ ଆରାମଚେୟାରରେ ଆରାମ କରୁଛନ୍ତି । ସ୍ଲେଟ ପିଲାଙ୍କୁ ପାଠ ଡାକଦେଇ ଗୁରୁଜୀ ଆଖିବୁଜି ଚିନ୍ତା କରୁଛନ୍ତି । ଏମାନେ ସମସ୍ତେ ଥକି ପଡ଼ୁଛନ୍ତି ।

## ଡାକ୍ତରୀ ମତ

ଡାକ୍ତର ବାବୁଙ୍କୁ ପଚାରିଲେ ସେ କହିବେ,କେବଳ ତାଙ୍କ ବହିପଢ଼ା କଥା । କ୍ଳାନ୍ତିର ଦୁଇଟି କାରଣ । ଖାଦ୍ୟରେ ଭିଟାମିନ୍ ବା ଜୀବନକାର ଅଭାବ । ଦ୍ୱିତୀୟଟି ହେଲା ଶରୀରରେ ଥିବା ଗ୍ରନ୍ଥିଗୁଡ଼ିକର କୌଣସି ବ୍ୟତିକ୍ରମ । ଭାରତୀୟମାନେ କେବଳ ଭାତ ବା ରୁଟି ଖାଉଛନ୍ତି, ସେମାନଙ୍କ ଖାଦ୍ୟରେ ଭିଟାମିନ୍ ଅଭାବ ହୋଇପାରେ । ସରକାର ବି ମାନୁଛନ୍ତି ଯେ ଆମ ଲୋକେ ପୁଷ୍ଟିକର ସୁଷମ ଖାଦ୍ୟ ପାଉ ନାହାନ୍ତି । ଏବେ ଓଡ଼ିଶାରେ କେତେ ଜଣ କେବଳ "ପୁଷ୍ଟିକର" ଖାଦ୍ୟ ନ ଖାଇ ମରିଗଲେ ବୋଲି ସରକାରୀ ଘୋଷଣା ହେଉଛି । ସେଥିପାଇଁ ମଝିରେ ମଝିରେ ଆମର ଭିଟାମିନ୍ ବଟିକା ଖାଇବା ଦରକାର ପଡ଼ିପାରେ ; କିନ୍ତୁ ଆମେରିକାରେ ଏ ଆତଙ୍କ କାହିଁକି ? ସେମାନଙ୍କ ଦେଶରେ ଅଣ୍ଡା, ଫଳ, କ୍ଷୀର ଓ ମାଂସ ଏତେ ପ୍ରଚୁର ଯେ ସେମାନେ ତାହା ଖାଇ ବଞ୍ଚୁଛନ୍ତି । ତାଙ୍କର ପୁଣି ଭିଟାମିନ୍ ଅଭାବ ହେବ କାହିଁକି ? ସେମାନଙ୍କର ଗ୍ରନ୍ଥି ଗୋଳମାଳ କଥା ମଧ୍ୟ ଡ଼ାକ୍ତରୀ ପରୀକ୍ଷାରୁ ଧରାପଡ଼େନା । ତାହା ହେଲେ ଡ଼ାକ୍ତରୀ ମତରେ କ୍ଳାନ୍ତିର କାରଣ ଯାହା ହୋଇପାରେ ; କିନ୍ତୁ ବୋଧହୁଏ ଆମେ ଅନ୍ୟ କୌଣସି କାରଣପାଇଁ ଥକିପଡ଼ୁ ।

## କସରତ ଏକ ଉପାୟ

କେହି କେହି ଭାବୁଥିବେ ଦୁର୍ବଳିଆ, ରୋଗିଣା ଲୋକମାନେ ହିଁ ଖାଲି ଥକି ପଡ଼ନ୍ତି । ଉପଯୁକ୍ତ ବ୍ୟାୟାମ କରି ବା ଦଣ୍ଡ ବୈଠକ ମାରି ମାଂସପେଶୀକୁ ଟାଣ କରିନେଲେ ସେ ଆଶଙ୍କା ଆପେ ଆପେ ଦୂର ହୋଇଯିବ ; କିନ୍ତୁ ଟାଣୁଆ ମାଂସପେଶୀବାଲା ମଲ୍ଲବୀର ମଧ୍ୟ ଥକିପଡ଼େ । ଖାଲି ଦଣ୍ଡବୈଠକ ମଣିଷ ମନକୁ ସତେଜ ରଖେ ନାହିଁ ।

ବ୍ୟାୟାମ ବିଶାରଦମାନେ କହନ୍ତି ଯେ, ମନଇଚ୍ଛା ବ୍ୟାୟାମ କଲେ ଶ୍ରାନ୍ତି କ୍ଳାନ୍ତିରୁ ରକ୍ଷା ମିଳେ ନାହିଁ । ସେଥିପାଇଁ ତାଙ୍କ ତାଲିକା ଦେଖିବାକୁ ହେବ । ସେମାନେ ଆଠପ୍ରକାର ବ୍ୟାୟାମର ବନ୍ଦୋବସ୍ତ କରିଛନ୍ତି । ସେଗୁଡ଼ିକ ପ୍ରତିଦିନ ଅଧ ଘଣ୍ଟାଏ ମନଲଗାଇ ଅଭ୍ୟାସ କଲେ, ଶରୀରର ପ୍ରତି ମାଂସପେଶୀରେ ସତେଜତାର ଢ଼େଉ କୁଆଡ଼େ ଖେଳିଯିବ । ତାଙ୍କ ତାଲିକା ନ ଦେଖି ମନଇଚ୍ଛା ବ୍ୟାୟାମ କଲେ କେବଳ ଗୋଟିଏ ଯୋଡ଼ିଏ ମାଂସପେଶୀର ଯାହା ଉପକାର ହୁଏ; କିନ୍ତୁ ଏମିତି ତାଲିକା ଦେଖି ପ୍ରତିଦିନ ବ୍ୟାୟାମ କରିବ କିଏ ? ମନ୍ତ୍ରୀ, ନେତା, ଡାକ୍ତର, ଇଞ୍ଜିନିୟର, ଶ୍ରମିକ, କୃଷକ ଏସବୁ ତାଲିକା ଦେଖି ଏମିତି

ବଡ଼ ବଡ଼ ବ୍ୟାୟାମ କଲେ, ଲୋକେ ଧୈର୍ଯ୍ୟଧରି ଅପେକ୍ଷା କରିବେ ତ ? କେତେକଙ୍କୁ ସ୍ଥାନ ମିଳିବ ନାହିଁ, କେତେକ ବେଳ ପାଇବେ ନାହିଁ, କେହି କେହି କଥାଟାକୁ ପସନ୍ଦ କରି ନ ପାରନ୍ତି ମଧ୍ୟ ।

## ଅନ୍ୟ ଉପାୟ

ତାହା ହେଲେ ସେମାନେ ଏହା ବଦଳରେ ଅନ୍ୟ ଉପାୟ କରିପାରନ୍ତି । ଘର୍ଷଣ କରନ୍ତୁ, ସାଇକେଲ ଚଲାନ୍ତୁ, ନ ହେଲେ ଦିନକୁ ଅନ୍ତତଃ ମାଇଲେ ବୁଲନ୍ତୁ । ଆମ ଦେଶରେ ପରିବହନର ସୁବନ୍ଦୋବସ୍ତ ହୋଇ ନାହିଁ ; କିନ୍ତୁ ବୁଲିବା ବା ସାଇକେଲେ ଚଳାଇବା ତ ଲୋକଙ୍କ ଅଭ୍ୟାସ । ଖାଲି ଧାଡ଼ି ବାନ୍ଧି କରିବାଟା ଯାହା ବାକି ; କିନ୍ତୁ ଆମେ ଜାଣୁ ଯେ ଶ୍ରମିକ ମୂଲିଆ ବିଲବାଡ଼ି ବା କଳକାରଖାନାରେ ଖଟି ଖଟି କ୍ଳାନ୍ତ । ନିଜ ପରିଶ୍ରମକୁ ବୃଦ୍ଧି ଅର୍ଜନ ନାହିଁ । ଜୀବନରେ ବିଶ୍ରାମ ନାହିଁ, ମୁଣ୍ଡ ଗୁଞ୍ଜିବାକୁ ଆଶ୍ରୟ ନାହିଁ, ପୁଷ୍ଟିସାର ଖାଦ୍ୟ କଥା ପଚ୍ଛରେ ଥାଏ । ଏପରିକି ସେମାନେ ପିଲାଙ୍କପାଇଁ ହାଣ୍ଡିରେ ତୋରାଣି ଟୋପାଏ ବି ନାହିଁ । ସେମାନେ ଯେତେବେଳେ ବଞ୍ଚିବା ଓ ମରିବା ମଧ୍ୟରେ ଦୋହଲୁଛନ୍ତି ସେମାନଙ୍କୁ ଶ୍ରାନ୍ତି କ୍ଲାନ୍ତିର-ଉପଶମ ବାଣୀ ଶୁଣାଇ କି ଲାଭ ? ଏସବୁ ବ୍ୟବସ୍ଥା କେବଳ ଆମ ଅଫିସ ବାବୁ, ହାକିମହୁକୁମା, ବ୍ୟବସାୟୀ ଓ ନେତାଙ୍କ ପାଇଁ । ତେବେ ମଧ୍ୟ ଏଇଟା ଏକ ଜରୁରୀ ସମସ୍ୟା । କାରଣ, ଶ୍ରମିକ ମୂଲିଆଏ ତ ଅବହେଳିତ ; କିନ୍ତୁ ଦେଶକୁ ଯେଉଁ ବୁଦ୍ଧିଜୀବୀ ଗଢ଼ିବେ ଚଳାଇବେ ଉଠାଇବେ, ସେମାନେ ଯଦି ଶ୍ରାନ୍ତ କ୍ଳାନ୍ତ ହୁଅନ୍ତି, ତାହା ହେଲେ ଆଉ ଦେଶର ନିସ୍ତାର ନାହିଁ । ଦେଶ ନିଶ୍ଚୟ ରସାତଳକୁ ଯିବ । ତେବେ ସେମାନେ କିପରି ସତେଜ ବା ପ୍ରଫୁଲ୍ଲ ରହିବେ, ତାହାହିଁ ଏହି ପ୍ରବନ୍ଧରେ ଆଲୋଚ୍ୟ ।

## ବିଶେଷଜ୍ଞଙ୍କ ମତ

କେତେକ ବିଶେଷଜ୍ଞଙ୍କ ମତ ଏହି ଯେ ଶ୍ରାନ୍ତି କ୍ଲାନ୍ତିପାଇଁ ବିଶେଷ ଭାବରେ ଆମ ପରିସ୍ଥିତି ହିଁ ଦାୟୀ । ଯେଉଁ କେତୋଟି କାରଣରୁ ଆମେ କ୍ଳାନ୍ତ ହୋଇପଡ଼ୁ ସେଗୁଡ଼ିକ ହେଲା :—

୧ । ଆଲୋକ—ଆମେରିକାରେ ଅନୁସନ୍ଧାନ କରି ଜଣାଯାଇଛି ଯେ ଶତକଡ଼ା ୭୦ ଭାଗ ଅଫିସ ଘରେ ଅତି ଉଜ୍ଜ୍ୱଳ ବିଜୁଳିବତି ଜଳେ । ଘରେ ଏତେ ଆଲୁଅ ପଡ଼େ ଯେ ଆଖି ଝଲସି ଯାଏ । ବିଶେଷଜ୍ଞଙ୍କ ମତରେ ମିଞ୍ଜି

ମିଞ୍ଜି ହୋଇ ଆଲୁଅ ଜଳୁଥିବା ଘରେ କିଛି ସମୟ ଅନାଇ ରହିଲେ ଯେମିତି ଆଖି କ୍ଲାନ୍ତ ହୋଇଯାଏ, ପ୍ରଖର ଆଲୁଅ ଜଳୁଥିବା ଘରେ କିଛି ସମୟ କାମ କଲେ ଆଖି ଠିକ୍ ସେହିମିତି କ୍ଲାନ୍ତ ହୁଏ । ଶତକଡ଼ା ୫୦ ଭାଗ ଅଫିସ ଘରେ ଯେମିତି ଆଲୋକ ଆଖି ଝଲସାଇ ଦିଏ ସେମିତି ତେବେ ଶତକଡ଼ା ୭୫ ଭାଗ ରହିବା ଘରେ, ପଢ଼ିବାପାଇଁ ଯଥେଷ୍ଟ ଆଲୁଅ ହୁଏ ନାହିଁ । ଏସବୁ ବିଜ୍ଞାନ-ବତରେ ହିସାବ କରାହେ । ତେଣୁ ଲଣ୍ଠନ ବା ଡିବି ଆଲୁଅରେ ତ ଯେଉଁମାନେ ପଢ଼ାପଢ଼ି କରନ୍ତି ବା ଘରଧନ୍ଦା କରନ୍ତି ସେମାନେ ତ ଅତିଶୀଘ୍ର କ୍ଲାନ୍ତ ହେବେଇ ହେବେ ।

## ୨ । ବାୟୁମଣ୍ଡଳ ଅବସ୍ଥା

ତାପମାତ୍ରା ଜଳୀୟବାଷ୍ପର ପରିମାଣ, ଆର୍ଦ୍ରତା ଓ ବାୟୁ ଚଳାଚଳ ଠିକ୍ ଉପଯୁକ୍ତ ଅବସ୍ଥାରେ ନ ଥିଲେ, ଖୁବ୍ ଶୀଘ୍ର ମୁଣ୍ଡ ଝିମେ, କାମ କରିବାକୁ ଇଚ୍ଛା ହୁଏନାହିଁ । ଦେହ ମଧ୍ୟ ମାନ୍ଦେ । ଆମେ ଯେତେବେଳେ ଅଫିସର କୋଠା-ବାଡ଼ି ବା ସ୍କୁଲ କଲେଜର ଘର ତିଆରି କରୁ ଏସବୁ ପ୍ରତି କଣ ନଜର ଦେଉ ? ବହୁତ କଚେରୀରି ଅଫିସରେ ପଣିଲମାନେ ଛିଡ଼ା ପାଲଟିଯାଏ ଏବଂ ଫାଇଲ ନକଲ କଲା ଭିତରେ ମଧ୍ୟ ଗଣ୍ଡା ଗଣ୍ଡା ଭୁଲ କରେ । ହାକିମ ଅଫିସ ଘରଟିର କଥା ଚିନ୍ତା ନ କରି, ଲୋକଙ୍କୁ ମାନ୍ଦା, ଅଳସୁଆ ଓ ବଦଖିଆଲଙ୍କ ବୋଲି ତା ଚରିତ୍ର ବହିରେ ପୂରଣ କରିଦିଅନ୍ତି । ସେମିତି ଅନ୍ଧାରୁଆ ଶ୍ରେଣୀ ଘରେ ଯଦି ପବନ ଯା'ଆସର ବନ୍ଦୋବସ୍ତ ନ ଥାଏ, ଛାତ୍ରମାନେ ବେଞ୍ଚରେ ବସିଲା ମାତ୍ରେ ଢୁଲେଇବେ । ଗୁରୁଜୀ ଘର କଥା ନ ଭାବି ପିଲାଙ୍କ ଉପରେ ତାଳ ଛିଣ୍ଡାନ୍ତି ।

## ଗୋଳମାଳ

ଗୋଳମାଳ କହିଲେ କେବଳ ଡାକବାଜ ଯନ୍ତ୍ରର କାନଫଟା ଝଙ୍କାର ବା ଲକ୍ଷପତି ଟିକଟ ବିକାପାଇଁ ଝଙ୍କାର ନୁହେଁ, ପଡ଼ିଶାଘରର ସୁମଧୁର ରେଡ଼ିଓ ସଙ୍ଗୀତ ବା ଥା-ଥା-ଥେ ଥେ ଓଡ଼ିଶୀ ନୃତ୍ୟ ମଧ୍ୟ ସେଥିରେ ଗଣାହେବ । ଏହି ଶବ୍ଦ ବା ଝଙ୍କାରରେ ଯେତେ ଅଭ୍ୟସ୍ତ ହେଲେ ମଧ୍ୟ, ଯେ କୌଣସି ଲୋକ ତା'ର ଏକାଗ୍ରତା ବା କାର୍ଯ୍ୟଦକ୍ଷତା କେତେକାଂଶରେ ହରାଇବସେ । କେତେକ ଛାତ୍ର ରେଡ଼ିଓ ନ ବଜାଇଲେ ଅଙ୍କ କଷି ପାରନ୍ତି ନାହିଁ ; କିନ୍ତୁ ବୋଧହୁଏ ରେଡ଼ିଓ ନ ବଜାଇ ଅନ୍ୟ ଏକ ନୀରବ କୋଠରୀରେ ଚେଷ୍ଟା କଲେ ସେମାନେ ଯଥେଷ୍ଟ ଅଧିକ ଅଙ୍କ କଷି ପାରନ୍ତେ । ବୋଧହୁଏ ଅନ୍ୟ

କୌଣସି ସାମାନ୍ୟ ଶବ୍ଦରେ ବ୍ୟସ୍ତବ୍ୟସ୍ତ ଓ ଅଧୀର ହୋଇ ସେମାନେ ରେଡ଼ିଓର ସ୍ୱରଝଙ୍କାରର ଆଶ୍ରୟ ନିଅନ୍ତି । ଅଙ୍କ କଷିବା ବା ପଢ଼ିବାକୁ ରେଡ଼ିଓ ଶବ୍ଦ ତାଙ୍କୁ ପ୍ରକୃତରେ ଅଙ୍କ କଷାରେ ସାହାଯ୍ୟ କରେ ନାହିଁ । ବସ୍ତୁତଃ ସେମାନେ କେବଳ ଅନ୍ୟ ପ୍ରକାର ଶବ୍ଦରୁ ରକ୍ଷା ପାଇବାକୁ ତାହା ବ୍ୟବହାର କରନ୍ତି ।

ଟହଲ ମାରିବା

କେତେକ ଡାକ୍ତର ପରୀକ୍ଷା କରି ଦେଖିଛନ୍ତି ଯେ କେବଳ ଗୋଟିଏ ଢଙ୍ଗରେ ବେଶୀ ସମୟ ବସି ବା ଠିଆ ହୋଇ କାର୍ଯ୍ୟ କଲେ, ଆମର ମାଂସ-ପେଶୀରେ ଯନ୍ତ୍ରଣା ହୁଏ ଓ ଆମେ ଅତିଶୀଘ୍ର କ୍ଳାନ୍ତ ହୋଇପଡ଼ୁ । ସେଥିପାଇଁ ଜଣେ ଜଣେ ଗୋଟିଏ ଜାଗାରେ କ୍ରମାଗତ କିଛି ସମୟ ବସି ନ ରହି ମଝିରେ ମଝିରେ ଉଠି ଟହଲ ମାରନ୍ତି । କିଛି ସମୟ ଟହଲିଲା ପରେ ପୁଣି ତାଙ୍କର କାର୍ଯ୍ୟ କରିବାକୁ ମନ ଲାଗେ ।

ବିରତି

କେତେକ ବୈଜ୍ଞାନିକ ପରୀକ୍ଷା କରି ଦେଖିଛନ୍ତି ଯେ ଆମ ଶରୀରରେ କୌଣସି ଏକ ନିର୍ଦ୍ଦିଷ୍ଟ ତାପମାତ୍ରା ରହିଲେ ଆମର କାର୍ଯ୍ୟଦକ୍ଷତା ସର୍ବାଧିକ ହୁଏ । କୌଣସି ମାନସିକ କାର୍ଯ୍ୟ ବା ବିଶ୍ଳେଷଣ କଲାବେଳେ ସେହି ତାପମାତ୍ରା ଆମ ପାଇଁ ଯଥେଷ୍ଟ ସହାୟକ ହୁଏ । ବ୍ୟକ୍ତିବିଶେଷରେ ତାହା ଭିନ୍ନ । ଏ କଥା ସତ ଯେ ଶୋଇଲା ବେଳକୁ ଆମ ଶରୀରର ତାପମାତ୍ରା କମିଯାଏ ଏବଂ ନିଦରୁ ଉଠିଲେ ପୁଣି ବଢ଼େ ; କିନ୍ତୁ ଗୁଡ଼ାଏ ସମୟ ବିଶ୍ରାମ ନେଲା ପରେ କିମ୍ବା ପୂରା ରାତିଏ ଶୋଇଲା ପରେ ଯେ ଗୁଡ଼ାଏ କାମ କରିହେବ ଏକଥା ଠିକ୍ ନୁହେଁ । କାଲିଫର୍ଣ୍ଣିଆରେ ଏ ସମ୍ବନ୍ଧରେ ଗବେଷଣା ହୋଇଥିଲା, ଦେଖାଗଲା କେହି ଠିକ୍ ନିଦରୁ ଉଠିଲା ପରେ ବେଶୀ କାମ କରୁଛି ତ ଅନ୍ୟ ଜଣକୁ ନିଦରୁ ଉଠିଲାର ପ୍ରାୟ କେତେ ଘଣ୍ଟା ପରେ ବେଶୀ କାମ କରିବାକୁ ଇଚ୍ଛା ହେଉଛି । ତେବେ ଯାହା ଜଣାପଡ଼ୁଛି ସେଥିରୁ ମନେ ହେଉଛି ଯେ ମଝିରେ ମଝିରେ ବିଶ୍ରାମ ନେଇ କାମ କରିବା ଭଲ । ଗୁଡ଼ାଏ ସମୟ ବିଶ୍ରାମ ନେଲେ ଯେ ଅଧିକ କାର୍ଯ୍ୟ କରିହେବ ଏକଥା ଭାବିବା ଭୁଲ । ବରଂ କାର୍ଯ୍ୟଦକ୍ଷତା କମିଯାଇ-ପାରେ । ଥରେ କାର୍ଯ୍ୟରୁ ମନ ଛାଡ଼ିଗଲେ ପୁଣି ଆଗ୍ରହ ଫେରାଇ ଆଣିବାକୁ ସମୟ ଲାଗେ ।

## ମାନସିକ ପ୍ରସ୍ତୁତ

କୌଣସି ଗୋଟିଏ କାର୍ଯ୍ୟ କରିବା ପୂର୍ବରୁ ଆମର କେତେକ ମାନସିକ ପ୍ରସ୍ତୁତ ଦରକାର । (୧) ପ୍ରଥମରୁ ଦେଖିବାକୁ ହେବ ଏ କାର୍ଯ୍ୟଟି ଆମର କରିବା ଉଚିତ କି ନୁହେଁ । ଏହି କର୍ତ୍ତବ୍ୟବୋଧ ନ ଜନ୍ମିଲେ କାର୍ଯ୍ୟଦକ୍ଷତା ଧିମେଇ ଯାଏ । ବେଳେବେଳେ ଉପର ହାକିମଙ୍କ ତାଗିଦରେ କିମ୍ବା କେବଳ ବନ୍ଧୁତା ଖାତିରରେ ଲୋକ କେତେକ କାର୍ଯ୍ୟକୁ ଆବୁରି ନିଏ । ସେଥିରେ କିନ୍ତୁ କାର୍ଯ୍ୟଟି ତ ସୁସ୍ଥରୂପେ ହୋଇ ପାରେନା, ତା'ଛଡ଼ା ଯେ କରେ ସେ ତାକୁ ଅନିଚ୍ଛାରେ କରୁଥିବାରୁ ତଥ୍ୟକ କରିପାରେ ନାହିଁ । ତା'ର ଦକ୍ଷତା ଶିଥିଳ ହୁଏ । (୨) ବିଶ୍ବାସ୍ଥରେ ଯେ କୌଣସି କର୍ମରେ କୃତିତ୍ବ ହାସଲପାଇଁ ଆତ୍ମବିଶ୍ୱାସ ଥିବା ଦରକାର । ଯଦି ଅକୃତକାର୍ଯ୍ୟ ହେବାର ଆଶଙ୍କା ରହେ ତାହା ହେଲେ କାର୍ଯ୍ୟଟି ପୂର୍ଣ୍ଣପ୍ରାଣରେ କରି ହୁଏ ନାହିଁ । ସେଥିପାଇଁ ଜିତିବାର ପ୍ରବଳ ଆଶା ଓ ବିଶ୍ୱାସ ନ ଥିଲେ ପୂର୍ଣ୍ଣ ପ୍ରାଣରେ ପରିଶ୍ରମ କରିବା ମଧ୍ୟ ଅସମ୍ଭବ ହୋଇଉଠେ ।

(୩) ଚୂଡ଼ାନ୍ତ ସ୍ଥିର ହେଲା ସଙ୍ଗେ ସଙ୍ଗେ କାର୍ଯ୍ୟ ଆରମ୍ଭ କରିବା । ଯଦି କୌଣସି କାର୍ଯ୍ୟ କରିବା କଥା ତେବେ ତାକୁ ପଛକୁ ନ ରଖି ସଙ୍ଗେ ସଙ୍ଗେ ଆରମ୍ଭ କରିଦିଅ ।

'ଶୁଭସ୍ୟ ଶୀଘ୍ରଂ' କଥାଟିର ତାତ୍ପର୍ଯ୍ୟ ଅଛି । ଆରମ୍ଭ ପାଇଁ ଚିନ୍ତାକରି ସମୟ ଗଡ଼ାଉଥିଲେ, କାମଟି ସରିବାକୁ ଡେରି ହୁଏ । ମଣିଷ ପାରିପାର୍ଶ୍ୱିକ ଅବସ୍ଥାର ଦାସ । ବେଳେ ବେଳେ ଆଗ୍ରହ ତୁଟିଯାଏ । ସେଥିପାଇଁ ଯେଉଁମାନେ ଏକ ଅନୁକୂଳ ସମୟ ବା ଶୁଭ ମୁହୂର୍ତ୍ତକୁ ଅପେକ୍ଷା କରିଥାନ୍ତି ଅନେକ କ୍ଷେତ୍ରରେ ସେମାନେ କେବଳ ଅପେକ୍ଷାରେହିଁ ରହିଯାନ୍ତି । କାର୍ଯ୍ୟ ଚାଲୁବେଳେ ଅନେକ ଜଟିଳ ପରିସ୍ଥିତି ଆସେ । ସ୍ୱାଭାବିକ ବୁଦ୍ଧି ବୃତ୍ତିଦ୍ୱାରା ଅଧିକାଂଶ କ୍ଷେତ୍ରରେ ମଣିଷ ତାର ମୁକାବିଲା କରେ । କିନ୍ତୁ କେବଳ ଆରମ୍ଭ ପାଇଁ ଚିନ୍ତାକରି ବସିଲେ ନାନା କାଳ୍ପନିକ ଓ ତାତ୍ତ୍ୱିକ ଜଟିଳତା ମନକୁ ଅଯଥା ବ୍ୟସ୍ତବ୍ୟାନ୍ତ କରେ । କାର୍ଯ୍ୟଟା ଯଦି ଶେଷ ପର୍ଯ୍ୟନ୍ତ ଚାଲୁ କରି ନ ହେଲା, ସେଥିରୁ ଓହରି ଆସିବାକୁ ହେବ । ତା'ପରେ ତ ସେ କାର୍ଯ୍ୟପାଇଁ ଆଉ ଦୁଶ୍ଚିନ୍ତାରେ ରହିବାକୁ ପଡ଼ିବ ନାହିଁ । ଆରମ୍ଭ ନ କରି କେବଳ ଯୋଜନା କରୁଥିଲେ ପ୍ରକୃତ ଜଟିଳତାର ସମ୍ମୁଖୀନ ନ ହୋଇ ମଧ୍ୟ ଅନେକ ଦିନ ପର୍ଯ୍ୟନ୍ତ କେବଳ ମନସ୍ତାପରେ ଘାରି ହେବାକୁ ହେବ । ଫଳରେ ଆମେ ଅନ୍ୟ ଯେ କୌଣସି ସହଜ କାର୍ଯ୍ୟରେ ମଧ୍ୟ ବାରଂବାର ଥକିପଡ଼ିବା ।

ବିମର୍ଷତା

ମାର୍କିନ ମନସ୍ତତ୍ତ୍ୱବିତ୍ ଡକ୍ଟର ଡ଼େଭିଲସ୍ଫ୍ରମ ମୋହନର ଅନ୍ୟ ଏକ କଥା ପାଇଁ ସତର୍କ କରି ଦେଇଛନ୍ତି । ଅନେକ ସମୟରେ ଆମ ଅଜାଣତରେ କେତେକ ଦର୍ଶଣାପାଇଁ ଆମେ ନିରୁତ୍ସାହ ହୋଇ ପଡ଼ୁଥାଉ । ସେହି ଅଜ୍ଞାତ ବିରକ୍ତତା ଆମ ମନକୁ ଏପରି ଅଧିକାର କରିଥାଏ ଯେ କାର୍ଯ୍ୟରେ ତାହା ଆମକୁ ବାରମ୍ବାର କ୍ଳାନ୍ତ କରେ । ଡାକ୍ତର ପାଖେ ପହଞ୍ଚି ଆମେ ଓଲଟା କଥା କହୁ । "ବାରମ୍ବାର ଥକି ପଡ଼ୁଥିବାରୁ ଆମେ ନିରୁତ୍ସାହ ହୋଇ ପଡ଼ୁଛୁ ।" ଏ କ୍ଷେତ୍ରରେ ଆମକୁ ବିରକ୍ତତାର କାରଣ ସନ୍ଧାନ କରିବାକୁ ହେବ ।

କାଳିକି ଆଉ

ଏହି ବିମର୍ଷଭାବ ଦୂର କରିବାପାଇଁ ଅନ୍ତତଃ ଆମ ନିଜ ତରଫରୁ କେତୋଟି ଦୋଷଦୁର୍ବଳତା ମଧ୍ୟ ଦୂର କରିବାକୁ ହେବ ।

୧ । କାମଟିକୁ ଆରମ୍ଭ ନ କରି ପଛକୁ ରଖିବା ଏକ ମାରାତ୍ମକ ଅପରାଧ । ଏହା ସବୁବେଳେ ଆମ ମୁଣ୍ଡ ଉପରେ ଝୁଲିରହି ଆମକୁ ଦୁଶ୍ଚିନ୍ତା ଓ ନିରାଶା ମଧ୍ୟରେ ବୁଡ଼ାଇ ରଖିବ । ଅନ୍ୟ କୌଣସି କାର୍ଯ୍ୟ ପାଇଁ ମଧ୍ୟ ଆମର ଉତ୍ସାହ ଆସିବ ନାହିଁ ।

୨ । କୌଣସି ଏକ ନିଷ୍ପତ୍ତିରେ ନ ପହଞ୍ଚି ସମୟ ଗଡ଼େଇବା ମଧ୍ୟ ସେହିପରି ଏକ ଅପରାଧ । ନିଷ୍ପତ୍ତିରେ ନ ପହଞ୍ଚିବା ଅର୍ଥ କାମଟିକୁ ପଛକୁ ପକେଇବା, ଯାହାକୁ କି କୁହାଯିବ ଏହା ପ୍ରଥମ ଅପରାଧ ।

୨ । ଦାୟିତ୍ୱଟି ନିଜ ମୁଣ୍ଡରୁ କଢ଼ାଇ କୌଶଳରେ ସମବାବୁଙ୍କ ଉପରେ ଲଦିବା ମଧ୍ୟ ଏହି ପ୍ରଥମ ଅପରାଧର ଅନ୍ତର୍ଭୁକ୍ତ । ଆମେ ତ କରିପାରିଲୁ ନାହିଁ, କିନ୍ତୁ ସମବାବୁ ଯେ ଆମ ରୁଚି ମୁତାବକ କାମଟି କରିବେ, ତାର ସମ୍ଭାବନା ମଧ୍ୟ କମ୍ । ପ୍ରକାରାନ୍ତରେ କାମଟି ଆମେ ପଛକୁ ପକାଇଦେଲୁ । ଏହି ଦୁଶ୍ଚିନ୍ତା ଆମ ମନରେ ଲଦିହୋଇ ଅନ୍ୟ କାର୍ଯ୍ୟକୁ ପୂର୍ଣ୍ଣପ୍ରାଣରେ କରିବାପାଇଁ ବାଧା ଜନ୍ମାଇବ । ତେଣୁ ଏକମାତ୍ର ଚିନ୍ତା ହେଲା ନିଜ ଦାୟିତ୍ୱ ମଧ୍ୟରେ ଯାହା ସମ୍ଭବ, ତାହାର ଯଥାଶୀଘ୍ର ସମାଧାନ କରିବା । ଯାହା ସମ୍ଭବ ନୁହେଁ ତାକୁ ପୂରାପୂରି ଅନ୍ୟକୁ ସମର୍ପି ଦେଇ ନିଶ୍ଚିନ୍ତ ରହିବା । କାରଣ ଦେଖାଯାଇଛି ଯେ ନିଜେ ଦାୟିତ୍ୱ ମୁଣ୍ଡାଇ ବେଶୀ ଖଟିଲେ ଲୋକ ଆଦୌ ଥକି ପଡ଼େ ନାହିଁ ; କିନ୍ତୁ ଅନ୍ୟ ଉପରେ ନିର୍ଭର କରି ଅଳ୍ପକାର୍ଯ୍ୟ କରୁଥିଲେ ମଧ୍ୟ ଲୋକକୁ ଶୀଘ୍ର କ୍ଳାନ୍ତ ଆସେ ।

## ପରନିନ୍ଦା

ଡକ୍ଟର ଏଫ୍. ଏନ. ଆଲେନ୍‌ଙ୍କ ମତରେ ଅନ୍ୟମାନଙ୍କର ନିନ୍ଦା ବା ଘୃଣା କରିବା ଫଳରେ ମଧ୍ୟ କାର୍ଯ୍ୟଦକ୍ଷତା କମିଯାଏ । ତା'ହାବୋଲି ଅନ୍ୟକୁ ଅଯଥା ଖୋସାମତ କରିବା ଉଚିତ ନୁହେଁ । ନିନ୍ଦା ବା ଖୋସାମତ ଉଭୟ ଲୋକର ଅନେକ ସମୟ ନଷ୍ଟ କରିଥାନ୍ତି । ଶେଷରେ ତାହା କାର୍ଯ୍ୟଦକ୍ଷତା ମଧ୍ୟ କମାଇ ଦିଏ । କେତେକ ଅନୁଷ୍ଠାନ ଗବେଷଣା କରି ସ୍ଥିର କରିଛନ୍ତି ଯେ ପରନିନ୍ଦା ବା ପରଚର୍ଚ୍ଚା ରୂପକ ମନୋବୃତ୍ତି ଦୂର କରିବାପାଇଁ, ବରଂ କୌଣସି ଖେଳ ବା ବ୍ୟାୟାମର ଆଶ୍ରୟ ନେବା ଉଚିତ । ଏହି ବ୍ୟାୟାମ ପ୍ରତିଦ୍ୱନ୍ଦ୍ୱିତାମୂଳକ ହେଲେ ଦୁଶ୍ଚିନ୍ତା ପାଇଁ ଅବସର ମିଳିବ ନାହିଁ ; କିନ୍ତୁ କେବଳ ଏକା ଏକା ଆସନ ବା ଭ୍ରମଣ କଲେ ପରଚିନ୍ତା ପୁଣି ଗ୍ରାସ କରିପାରେ ।

## ଉତ୍ସାହ ବାଣୀ

ଏକ କାରଖାନାର ଶ୍ରମିକମାନଙ୍କ ଉପରେ ଗବେଷଣା କରି ଡକ୍ଟର ଗ୍ରିଲ-ବ୍ରେଥ ସିଦ୍ଧାନ୍ତ କରିଛନ୍ତି ଯେ ଗୁଡ଼ାଏ ସ୍ୱାସ୍ଥ୍ୟବତୀ ସ୍ତ୍ରୀଲୋକ ଏକା କାମ କରୁଥିଲେ ମଧ୍ୟ ସେମାନଙ୍କ ମଧ୍ୟରୁ କେତେକ ଆଦୌ କ୍ଳାନ୍ତ ହେଉ ନ ଥିଲେ । ଏପରିକି ସେମାନଙ୍କୁ ଆହୁରି ଅଧିକା କାର୍ଯ୍ୟ କରିବାକୁ ଦିଆଗଲେ ମଧ୍ୟ ସେମାନେ ଆଦୌ କ୍ଳାନ୍ତ ହେଲେ ନାହିଁ, ଅଥଚ ଅନ୍ୟମାନେ ଅଳ୍ପ କାମ କରି ଥକି ପଡୁଥିଲେ । ଏହାର ଏକମାତ୍ର କାରଣ ଦେଖାଗଲା ଯେ କ୍ଳାନ୍ତ ନହେଉଥିବା ଶ୍ରମିକମାନଙ୍କର ଆଗକୁ ଆଶା ଭରସା ଥିଲା । ଉଜ୍ଜ୍ୱଳ ଆଶା ଓ ଭବିଷ୍ୟତ ସମୃଦ୍ଧିକୁ ଲକ୍ଷ୍ୟ ରଖି ସେମାନେ ଖଟୁଥିଲେ । ଯେଉଁମାନେ କ୍ଳାନ୍ତ ହୋଇ ପଡୁ-ଥିଲେ, ସେମାନଙ୍କ ମନରେ ସେମିତି କିଛି ରଙ୍ଗୀନ ସ୍ୱପ୍ନ ନଥିଲା । ନିପୁଣ୍ୟପୂର୍ବକରେ ଡକ୍ଟର ହେନେରି ଗଡ଼ାର୍ଡ଼ ଏକ ଯନ୍ତ୍ର ନିର୍ମାଣ କରି ଲୋକଙ୍କର କାର୍ଯ୍ୟ କରିବାର ଶକ୍ତି ମାପୁଥିଲେ । ସେ ଦେଖିଲେ ଯେ ଯେଉଁମାନେ ବାରମ୍ବାର ଉତ୍ସାହିତ ହେଉଥିଲେ, ସେମାନଙ୍କର କର୍ମଶକ୍ତିର ମାପ, ଗାଳି ଶୁଣୁଥିବା ଲୋକଙ୍କଠାରୁ ଢେର ଅଧିକ ଥିଲା । ତାହା ହେଲେ କଣ କେବଳ ଅନ୍ୟମାନଙ୍କ ଉତ୍ସାହ ଉପରେ ନିର୍ଭର କରି ଆମର କାର୍ଯ୍ୟଦକ୍ଷତା ବଢ଼ାଯିବ ? ତାହା କଣ ସବୁ-ବେଳେ ସମ୍ଭବ ? ସେଥିପାଇଁ ଅନ୍ୟ ଉପାୟ ମଧ୍ୟ ଅଛି ।

## ଆତ୍ମଚେଷ୍ଟା

୧ । ଠିକ୍ ସମୟ ଅନୁସାରେ କଣ କରିପାରୁଛ, ତାର ତାଲିକା କର ଏବଂ ତାକୁ ଦେଖି ଦେଖି, କଣ କରିପାରିବ ତାର ଯୋଜନା କର ।

୨ । ଅତୀତ କେତେ ମାସର କାର୍ଯ୍ୟ ଦେଖି ଭବିଷ୍ୟତ କେତେ ମାସ ପାଇଁ ଟିକିଏ ଅଧିକ ଯୋଜନା କର । ଏପରି କଲେ ସେଉଁ ଉଜ୍ଜ୍ୱଳ ସମୃଦ୍ଧିର ସମ୍ଭାବନା ଅଛି ତା କଥା ଟିକିଏ ଭାବିଲେ ମନରେ ଉତ୍ସାହ ଆସିବ ।

୩ । ତୁମ କୃତିତ୍ୱ କଥା ବନ୍ଧୁଙ୍କ ମେଳରେ ଆଲୋଚନା କଲେ ହିଁ ତୁମେ ଉତ୍ସାହ ପାଇପାର ଏବଂ ତାହା ତୁମ କାର୍ଯ୍ୟଦକ୍ଷତା ବଢ଼ାଇବାରେ ଯଥେଷ୍ଟ ସାହାଯ୍ୟ କରିବ ।

ମନେରଖ; ଯେ ପ୍ରତ୍ୟେକ ମନୁଷ୍ୟର କାର୍ଯ୍ୟ ସମ୍ପାଦନପାଇଁ ଏକ ସାଧାରଣ ଶକ୍ତି ଅଛି । ଅଜ୍ଞାତରେ ତାର ଅପଚୟ କରି ମଣିଷ ଥକିପଡ଼େ । ଅତଃ ଏହାକୁ ଉପଲବ୍ଧି କଲେ ହିଁ କେହି ସହଜରେ ଥକି ପଡ଼ିବ ନାହିଁ ।

— ——

# ଗୁରୁ, ଶିକ୍ଷକ ଓ ଅଧ୍ୟାପକ

ପୂର୍ବକାଳର ମହାତ୍ମାଏ ଗୁରୁ ପର୍ଣ୍ଣକୁଡ଼ିଆରେ ରହୁଥିଲେ; ସାଂସାରିକ ଜଞ୍ଜାଳ ବା ବିଷୟବାସନା ତାଙ୍କୁ ବ୍ୟତିବ୍ୟସ୍ତ କରୁ ନ ଥିଲା । ଯାଗ ଯଜ୍ଞ, ପୂଜା ପ୍ରାର୍ଥନା ଓ ଯୋଗତପସ୍ୟାରେ ତାଙ୍କର ସମୟ କଟୁଥିଲା । ସାଧୁତା, ବିନୟ, ସତ୍ୟ ଓ ଅହିଂସାର ସେ ଥିଲେ ପ୍ରତିମୂର୍ତ୍ତି । ବେଶଭୂଷାରେ ଆଡ଼ମ୍ବର ନ ଥିଲା । ମୁଣ୍ଡରୁ ଜଟା ସଜନାଚୁଳିଁ ପରି ଲମ୍ବିଥିଲା । କେତେକ ମାତ୍ର ଚୁଟିଟିଏ ଛାଡ଼ି ଲଣ୍ଡାମୁଣ୍ଡ କରୁଥିଲେ । ଅଧିକାଂଶଙ୍କର ଦେହସାରା ବିଭୂତି, ଆବକ୍ଷଲମ୍ବିତ ଶ୍ମଶ୍ରୁ, ହାତରେ କମଣ୍ଡଳୁ ବା ଚିମୁଟା ମୁଖରେ ଓଁକାର ଓ ମଥାରେ ଆଧ୍ୟାତ୍ମିକ ଚିନ୍ତା । ଏହି ମହାତ୍ମା ଗୁରୁଙ୍କର ଶିଷ୍ୟ ମଧ୍ୟ ତଦ୍ରୂପ । ବାଲ୍ୟ-ବ୍ରହ୍ମଚାରୀ ବେଶରେ ଗୃହତ୍ୟାଗ କରି, ଆହାର ନିଦ୍ରା ଭୁଲି, ନାକଟେକି ସ୍ନାନ କରି, ବଲ୍କଳପରିଧାନ କରୁଥିଲେ । ସଞ୍ଜବତୀ ଲଗିଲେ ପ୍ରାର୍ଥନା ହେଉଥିଲା । "ଗୁରୁର୍ବ୍ରହ୍ମା, ଗୁରୁ ର୍ବିଷ୍ଣୁଃ, ଗୁରୁର୍ଦ୍ଦେବଃ ମହେଶ୍ୱରଃ, ଗୁରୁ ସାକ୍ଷାତ ପରମ୍ବ୍ରହ୍ମ ତସ୍ମୈ ଶ୍ରୀ ଗୁରବେ ନମଃ ।" ଏହିଭଳି ଶତଶତ ଅନୁଗତଙ୍କ ମେଳରେ ଗୁରୁ ତାଙ୍କର ମହାତ୍ୱର ସୀମା ନିଃସଙ୍କୋଚରେ ପ୍ରସାରଣ କରି ଲାଗିଥିଲେ । ଏମାନେ ଆମ ପୁରାଣ, ଉପନ୍ୟାସ ଓ କାବ୍ୟ କବିତାର ବିଷୟବସ୍ତୁ ହୋଇ ରହିଗଲେ । ତାଙ୍କ କାହାଣୀ ଆଜି ଆମକୁ ଅତି ପ୍ରଭାବିତ ନ କରି କେବଳ ବିସ୍ମିତ କରି ଲାଗିଛି ।

ଯାହା ସେ କାଳର କଳ୍ପନାରେ ସ୍ଥାନ ପାଇଥିଲା ଆଜି ତାହା ଆମକୁ କଳ୍ପନାତୀତ । କାରଣ ଆମେ ଶୁଣିଥିଲୁ ଆରୁଣି ଉପାଖ୍ୟାନ । ସେ ଗୁରୁଙ୍କ କ୍ଷେତରେ ପାଣି ଅଟକାଇବାପାଇଁ ନିଜେ ହିଡ଼ କଡ଼ରେ ଶୋଇ ଯାଇଥିଲେ । ଏବେ ଅଧ୍ୟାପକମାନେ କାହିଁକି ବେଶୀ କଳପାଣି ପାଇବେ ବୋଲି ଅଭିଯୋଗ କରି ତାଙ୍କର ହଳେ ଅନୁଗତ ଛାତ୍ର ସେହି ପାଣି ଅଟକାଇବାପାଇଁ ପାଇପ ବାଲ୍ଭକୁ ପିଟି ତାଙ୍କ ହାତ ଭାଙ୍ଗି ଦେଇଥିଲେ । ଗୁରୁ ଓ ଅଧ୍ୟାପକ ଉଭୟଙ୍କ ପାଣି ଅଟକ ହୋଇଛି । ଶିଷ୍ୟ ଓ ଛାତ୍ର ଦୁଇଟି ଭିନ୍ନ ଉଦ୍ଦେଶ୍ୟରେ ଦୁଇ ପ୍ରକାରେ ତାହା ସାଧନ କରିଛନ୍ତି । ଉପମନ୍ୟୁଙ୍କର ଗୋରୁଜଗା କଥା ଦେଖନ୍ତୁ । ଗୁରୁ ଶିଷ୍ୟଙ୍କର ଖାଇବାର ସମସ୍ତ ବାଟ ବନ୍ଦ କରିଦେଲେ, ତଥାପି ଉପମନ୍ୟୁ

ଗୋରୁ ଜଗାରେ ନୃଷ୍ଟି ନକର ଅରକକ୍ଷୀର ଖାଇ ଶ୍ୱେକ ସମ୍ଭାଳିଲେ । କର୍ତ୍ତବ୍ୟ-ରତ ଅନୁଗତ ଶିଷ୍ୟ ଚକ୍ଷୁହୀନ ହୋଇପଡ଼ିଲେ । ଏବେ ଛାତ୍ରଙ୍କୁ ପରୀକ୍ଷାହଲରେ ନକଲ କରିବାର ସୁଯୋଗ ନ ଦେବାରୁ ଛାତ୍ରଙ୍କ ହାତ ବୋମାରେ କର୍ତ୍ତବ୍ୟ-ପରାୟଣ ସରକାରୀ ଅଧ୍ୟାପକ ଚକ୍ଷୁହୀନ ହୋଇଗଲେ । ବାସ୍ତବିକ ତୁଳନା କଲେ ସେ କାଳର ଗୁରୁ ଓ ଆଧୁନିକ ଅଧ୍ୟାପକଙ୍କ ଅବସ୍ଥା ମଧ୍ୟରେ କି ପାର୍ଥକ୍ୟ !

ଏହାର କାରଣ କଣ ? ଖୋଜିବସିଲେ ଅନେକ । ମାନବସମାଜରେ ନାନା ପରିବର୍ତ୍ତନ ଦେଖାଦେଇଛି । ଧର୍ମ, ଅର୍ଥନୀତି, ଶାସନ ଓ ପରମ୍ପରାର ଆଭିମୁଖ୍ୟ ବଦଳିଯାଇଛି । ସେଥିପାଇଁ ପୁରାଣଯୁଗର ଆଚରଣକୁ ପୁନଃପ୍ରଚଳନ କରିବାପାଇଁ ଚେଷ୍ଟାକଲେ ଆମେ ଥକିପଡ଼ିବା । ଦିନେ ଗାଡ଼ିକୁ ଘୋଡ଼ା ଟାଣୁଥିଲା, ଆଜି ଘୋଡ଼ାକୁ ଗାଡ଼ି ଟାଣିଲାଣି । ଯୁଗ ବଦଳି ଯାଇଛି । ବିଶ୍ୱବିଦ୍ୟା-ଳୟ ହତାରେ ଉପମନ୍ୟୁ ଓ ଆରୁଣିଙ୍କୁ ଆଜି ଖୋଜି ଖୋଜି ବୁଲିଲେ ଆମେ ନିରାଶ ହେବା । ସେହିପରି ଅଧ୍ୟାପକଙ୍କ ମହଲରେ ଜନକ, ସନକ, ଶୁକଦେବ, ଶୁକ୍ରାଚାର୍ଯ୍ୟ, ବିଶ୍ୱାମିତ୍ର କି ବଶିଷ୍ଠ କେହି ମିଳିବେ ନାହିଁ ।

ସମାଜରେ ପ୍ରତିଷ୍ଠିତ ହୋଇ ପୂଜା ପାଇବାପାଇଁ ଯାହା ଦରକାର ଆମେ ଗୁରୁଶିଷ୍ୟଙ୍କୁ ତାହାହିଁ ଶିକ୍ଷା ଦେଉଥିଲେ । ଶିଷ୍ୟର ଶରୀର, ମନ, ଚରିତ୍ର ଓ ଜ୍ଞାନର କିପରି ବିକାଶ ହେବ ଗୁରୁ ସେଥିପାଇଁ କଡ଼ା ନଜର ରଖିଥିଲେ । ପ୍ରକୃତି ମେଳରେ ଗୋପାଳନ, କୃଷି, ବେଦାଧ୍ୟୟନ, ଅତିଥିଚର୍ଯ୍ୟା, ଯୋଗ-ସାଧନା, ତପସ୍ୟା ଆଦି କାର୍ଯ୍ୟରେ ଶିଷ୍ୟ ଉପଯୁକ୍ତ ଶିକ୍ଷାଲାଭ କରୁଥିଲା । ଏହାଛଡ଼ା ଚରିତ୍ରର ବିକାଶପାଇଁ ଧୈର୍ଯ୍ୟ, ଏକାଗ୍ରତା, ସାଧୁତା ଓ ବିନୟ ଆଦି ଗୁଣରେ ଭୂଷିତ ନ ହେଲେ ଆଶ୍ରମବାସୀ ଗୁରୁଙ୍କର କୋପାନଳରେ ଶିଷ୍ୟ ଦଗ୍‌ଧୀଭୂତ ହେଉଥିଲା । ସେ କାଳର ଗୁରୁ ଓ ଶିଷ୍ୟ କେତୋଟି ପାଠ୍ୟବର୍ଷ ବା ଏକ ନିର୍ଦ୍ଦିଷ୍ଟ ପାଠ୍ୟ ନିର୍ଘଣ୍ଟର କଟକଣା ମଧ୍ୟରେ ସୀମାବଦ୍ଧ ନ ଥିଲେ; କିନ୍ତୁ ଏବେ ସେ ସବୁ କଣ ଚଳିବ ?

ଆଜି ଛାତ୍ରଙ୍କୁ ସମାଜରେ ପ୍ରତିଷ୍ଠିତ କରାଇବା ଅଧ୍ୟାପକର ସାଧ୍ୟାତୀତ । ସମାଜ ଦୁର୍ନୀତିଗ୍ରସ୍ତ, ଅତ୍ୟାଚାର, ଅନାଚାର ଓ ବ୍ୟଭିଚାରରେ ଉତ୍ପୀଡ଼ିତ । ଉପଯୁକ୍ତ ମାନବିକ ଗୁଣରେ ଭୂଷିତ ହେଲେ ଏଭଳି ସମାଜରେ କିଏ ପ୍ରତିଷ୍ଠିତ ହୋଇପାରିବ ? ଯେଉଁମାନେ ତଥାକଥିତ ଶିକ୍ଷିତ ସେମାନେ ସାମାଜିକ ନୀତି କଥା ଚିନ୍ତା କରୁଛନ୍ତି କି ? ବାସ୍ତବିକ ଦେଖିଲେ ସ୍କୁଲ କଲେଜରେ ଆମେ ଯେଉଁ ଶିକ୍ଷା ପାଉଛେ ସେଥିରେ ଏକାଧାରରେ

ଶରୀର, ମନ, ଚରିତ୍ର ଓ ଜ୍ଞାନର ବିକାଶ ହେଉଛି କି ? ଶିକ୍ଷକଙ୍କ ମେଳରେ ଛାତ୍ର ମାନେ କେତେ ଘଣ୍ଟା ରହିବାବେଳକୁ ଅନ୍ୟାନ୍ୟମାନଙ୍କ ମେଳରେ ଦୀର୍ଘ କେତେଦିନ ବିତାଇ ଦେଉଛନ୍ତି । ତେଣୁ ଛାତ୍ରର ବୌଦ୍ଧିକ ଉନ୍ନତି ବା ମାନସିକ ବିକାଶପାଇଁ ଶିକ୍ଷକ ଅନୁକୂଳ ସୁଯୋଗ ପାଉନାହାନ୍ତି । ଅଳ୍ପ ବେତନଭୋଗୀ ଶିକ୍ଷକ, ଅଫିସରଙ୍କଠାରୁ ଆରମ୍ଭ କରି ଦାଲଦା ଦୋକାନ ବା ଡାକ୍ତରଖାନା ପର୍ଯ୍ୟନ୍ତ ଧାଉଁ ଦେଉଛନ୍ତି । ଅଫିସର ମାଲିକ, ଡାଲଡା ବ୍ୟବସାୟୀ ବା ଡାକ୍ତର ବାବୁଙ୍କ କୁଳଚନ୍ଦ୍ରମାମାନେ ଯଦି ଶିକ୍ଷକ ମହାଶୟଙ୍କର ଏ ଦୁରବସ୍ଥା ସ୍ୱଚକ୍ଷୁରେ ଦେଖନ୍ତି । ସେମାନେ କଣ କେବେ କଳ୍ପନା କରିପାରିବେ ଯେ ସେହି ଦୁଃସ୍ଥମାନେ ତାଙ୍କୁ ବାସ୍ତବ ଜୀବନର ମୂଲ୍ୟବୋଧ ସମ୍ବନ୍ଧରେ ଉପଯୁକ୍ତ ଧାରଣା ଦେଇ ପାରିବେ ? ତେଣୁ ସେମାନେ ଧରିନିଅନ୍ତି ସ୍କୁଲ କଲେଜରୁ ତାଙ୍କର କେବଳ ଏକ ସାର୍ଟିଫିକେଟ୍ ଲୋଡ଼ା । କଳେ-ବଳେ-କଉଶଳେ ତାହାହିଁ ହାସଲ କରିବାକୁ ହେବ । ଉଚ୍ଚ ପଦରେ ପ୍ରତିଷ୍ଠିତ ହୋଇ ଅକୁଣ୍ଠ ସ୍ୱାର୍ଥ ସାଧନ ବା ଆକଣ୍ଠ ସମାଜ ଶୋଷଣ କରିବାକୁ ହେଲେ ସାର୍ଟିଫିକେଟ୍ ହିଁ ଏକମାତ୍ର ପରମିଟ୍ । ଶରୀର, ମନ, ଚରିତ୍ର ଓ ଜ୍ଞାନର ବିକାଶ ଯେ ଶିକ୍ଷା ତାହା କେବଳ ଶିକ୍ଷାର ସଂଜ୍ଞା ହୋଇ ରହିଗଲା ।

କେତେକ ମନେକଲେ ଜଣେ ଗୁରୁଙ୍କଠାରୁ ସମସ୍ତ ବିଦ୍ୟା ହାସଲ କରିବା ଅପେକ୍ଷା ବିଭିନ୍ନ ବିଶେଷଜ୍ଞଙ୍କଠାରୁ ତାଲିମ ପାଇବା ଅଧିକ ବିଜ୍ଞାନସମ୍ମତ । ତାହାହିଁ କାଳକ୍ରମେ ବଳବତ୍ତର ହେଲା । ସ୍କୁଲ ବଗିଚାରେ ଉଦ୍ୟାନକର୍ମ ବା କୃଷି ବ୍ୟବସ୍ଥା ରହିଲା । ଖେଳ ଓ କୁସ୍ତି କସରତ୍‌ପାଇଁ ପିଟିଆଇ ସାର୍ ରହିଲେ । ସଙ୍ଗୀତ ଶିକ୍ଷକ, ନୃତ୍ୟଗୁରୁ, ସିଲେଇ ମାଷ୍ଟ୍ରାଣୀ, ଏନ୍. ସି. ସି. କାପ୍‌ଟେନ, ସଂସ୍କୃତ ପଣ୍ଡିତେ ଓ ହିନ୍ଦୀ ଗୁରୁଜୀ ସମସ୍ତେ ଯୋଗ ଦେଲେ । ସ୍କୁଲ ଆରମ୍ଭରେ ପ୍ରାର୍ଥନା ହେଲା, ବକ୍ତୃତାର ଅଭ୍ୟାସ କରିବାପାଇଁ ଆଲୋଚନା ସଭା ବସିଲା, ଅଭିନୟ କଳା ଶିକ୍ଷା ପାଇଁ ନାଟକ ମଞ୍ଚସ୍ଥ କରାଗଲା ; କିନ୍ତୁ କେଉଁ ଛାତ୍ର କେଉଁ ଶିକ୍ଷକଙ୍କୁ ଆଦର୍ଶ କଲା ତାହାର ଠିକଣା ରହିଲା ନାହିଁ । ପି.ଟି.ଆଇ. ସାର୍‌ଙ୍କୁ ଯେ ଆଦରିନେଲା ତାହାର ମାଂସପେଶୀ ବଳିଷ୍ଠ ହେଲେ ମଧ୍ୟ ଅଙ୍କରେ ସେ ମାଙ୍କଡ଼ଚଟ୍ ମାରିଲା । ଯେ ସର୍ପିଳ ଠାଣିରେ ଅଙ୍ଗଭଙ୍ଗୀ କରି ନୃତ୍ୟବିଶାରଦ ହେଲା ତାହାର ସଂସ୍କୃତ ମନେ ପଡ଼ିଲା ନାହିଁ । ଯେ ବିଜ୍ଞାନରେ ଆଗ୍ରହ ନେଇ ରଖିଲା ତାହାର ଚଷମା କାଚ ଦିନକୁଦିନ ମୋଟା ହେବାକୁ ଲାଗିଲା । ତେଣୁ ଏକାଧାରରେ ଆଶାନୁରୂପ ଉନ୍ନତି ଆସିଲା ନାହିଁ । ନ ଆସିବା ସ୍ୱାଭାବିକ ।

ବିଶ୍ୱବିଦ୍ୟାଳୟରେ ଆହୁରି ବିଚିତ୍ର କାରବାର । ଶ୍ରେଣୀରେ ବକ୍ତୃତା ଦେଇଦେବା ହିଁ ଏକମାତ୍ର କର୍ତ୍ତବ୍ୟ ବୋଲି ଅଧ୍ୟାପକ ଧରିନେଲେ । କୌଣସି ମତେ କେତେ ଘଣ୍ଟା ବକ୍ତୃତା କକ୍ଷରେ କଟେଇନେଲେ ଦୈନିକ ଛାତ୍ର ଅଖଣ୍ଡ ସ୍ୱାତନ୍ତ୍ର୍ୟ ଧରି ଚଳପ୍ରଚଳ ହେଲା । ଅନ୍ୟ ଦିଗକୁ ଧ୍ୟାନ ନ ଦେଇ କେବଳ ଗୋଟିଏ ଗୋଟିଏ ବିଷୟରେ ସମସ୍ତେ ପଣ୍ଡିତ ହେବାକୁ ଚେଷ୍ଟାକଲେ । ଜୀବନ ଯେ ଏକ ପରିପୂର୍ଣ୍ଣତା ତାହା ସମସ୍ତେ ପାଶୋରି ପକାଇଲେ । ମାନବିକ ଗୁଣରେ ଉଦ୍‌ବୃଦ୍ଧି ବା ଚରିତ୍ରଗଠନ ଏକପ୍ରକାର ରକ୍ଷଣଶୀଳ ମନୋବୃତ୍ତି ବୋଲି ଅଧିକାଂଶ ମନେକଲେ । ଫଳରେ ସମାଜରେ ନାନା ବିଶୃଙ୍ଖଳା ପ୍ରବେଶ କଲା । ସମାଜ ପ୍ରତି ବ୍ୟକ୍ତିର ଦାୟିତ୍ୱ କଣ ସେ ଭୁଲିଗଲା । ସ୍ୱାଧୀନ ଦେଶର ସ୍ୱତନ୍ତ୍ର ଦାବୀ ଧରି ହଜାର ହଜାର ଛାତ୍ର ବିଶ୍ୱବିଦ୍ୟାଳୟ ଦ୍ୱାରରେ ପ୍ରବେଶ କଲେ । ଅଧ୍ୟୟନ ଏକ ପ୍ରହସନ ହେଲା । ପରିମଣ୍ଡଳ ବିଷାକ୍ତ ହେଲା । ଶିକ୍ଷାୟତନ ନେତାଙ୍କ ବିହାର କ୍ଷେତ୍ର ହେଲା । ବାହାରୁ ଯେତିକି ନେତା ନ ଆସିଲେ ଭିତରୁ ସେତିକି ନେତା ହାତ ଉଞ୍ଚାଇ ମୁଣ୍ଡ ଟେକିଲେ । ଅନଶନ, ଧର୍ମଘଟ, ଧସ୍ତାଧସ୍ତି ବା ପିଟାପିଟି ହେଲା ଦୈନନ୍ଦିନ ଘଟଣା । କେଉଁଠି ଛାତ୍ର-ଙ୍କର ହାତ ଭାଙ୍ଗିଲା ତ ଅଧ୍ୟାପକଙ୍କ ଆଖି ଚଣ୍ଡା ହେଲା । କୁଳପତି ଘେରାଉରେ ପଡ଼ିଲେ ତ ଅଧ୍ୟକ୍ଷଙ୍କ ଚେତା ଫେରିଲା ନାହିଁ । ସେତିକିବେଳେ ଆମର ଆଲୋଚ୍ୟ ଶିକ୍ଷକ ବା ଅଧ୍ୟାପକଙ୍କ ଆଚରଣ କିପରି ହେବା ଉଚିତ । ସେମାନ-ଙ୍କର ସାମାଜିକ ଦାୟିତ୍ୱ କଣ ?

ଆମର କାମ୍ୟ ହେଲା ଶିକ୍ଷକ ସଦାଚାରୀ ହୁଅନ୍ତୁ । ସେ ସାଧୁତା, ବିନୟ, ଅହିଂସା, ବୈରାଗ୍ୟ, ଏକାଗ୍ରତା, ଅଧ୍ୟବସାୟ ଓ ପାଣ୍ଡିତ୍ୟ ଆଦି ଆଦର୍ଶ ଗୁଣରେ ଛାତ୍ରଛାତ୍ରୀ ତଥା ସମାଜକୁ ଉଦ୍‌ବୁଦ୍ଧ କରନ୍ତୁ । ପରୋପକାର ଓ ନିଃସ୍ୱାର୍ଥପର ସେବାଦ୍ୱାରା ସମାଜମଙ୍ଗଳ କାର୍ଯ୍ୟରେ ଜଡ଼ିତ ରହନ୍ତୁ । ସାହାଯ୍ୟ ମନୋବୃତ୍ତି ଧରି ଛାତ୍ରବତ୍ସଳ ହେବା ସଙ୍ଗେ ସଙ୍ଗେ ଛାତ୍ରଙ୍କ ପ୍ରତି ପିତୃତୁଲ୍ୟ ବ୍ୟବହାର କରନ୍ତୁ । ଛାତ୍ରର ପୂର୍ଣ୍ଣାଙ୍ଗ ବିକାଶ ଲାଗି କର୍ତ୍ତବ୍ୟରେ ହେଳା ନକରି କର୍ମତତ୍ପର ହୁଅନ୍ତୁ । ଅନବରତ ଅଧ୍ୟୟନରତ ରହି ସୂକ୍ଷ୍ମ ବିଶ୍ଳେଷଣ ଦ୍ୱାରା ନିଜ ବିଷୟରେ ପାରଦର୍ଶିତା ପ୍ରଦର୍ଶନ କରନ୍ତୁ । ହିଂସା, ସାମ୍ପ୍ରଦାୟିକତା, ଅସାଧୁତା ଓ ଆଳସ୍ୟ ଆଦି ଦୁର୍ଗୁଣଠାରୁ ଦୂରେଇ ରହନ୍ତୁ । ସେମାନଙ୍କର ସାମାଜିକ ଦାୟିତ୍ୱ ସମ୍ବନ୍ଧରେ ଏତିକି କୁହାଯାଇପାରେ ଯେ ଅନୁଷ୍ଠାନର ଗୌରବ ଅକ୍ଷୁଣ୍ଣ ରଖିବା ସଙ୍ଗେ ସଙ୍ଗେ ଦେଶର ଅଖଣ୍ଡତା ଓ ଜାତୀୟତା ପ୍ରତି ଆତ୍ମୋତ୍ସର୍ଗ କରନ୍ତୁ । ତାହା ହେଲେ ସେ ଦିନେ ଦେଶବାସୀଙ୍କୁ କନ୍ଦାଇ ନିଜେ ହସି ହସି ଆତ୍ମତୃପ୍ତିରେ ଆଖି ବୁଜିବେ । ଯୋଗକୁ ଯଦି ସୁପାରିଶ ମିଳିଗଲା ତ

ଜୀବନେ ବା ମରଣେ ତାଙ୍କର ଏକସହସ୍ର ମୁଦ୍ରା ବା ପଦ୍ମଶ୍ରୀର ଆଶା ମଧ୍ୟ ଉଜ୍ଜ୍ୱଳ ହୋଇ ଉଠିବ । ଏହାହିଁ ଆତ୍ମପ୍ରତାରଣା ।

ଦେଶରେ ସର୍ବତ୍ର ସେହି ପ୍ରତାରଣାର ରଣକୌଶଳ । ବଜ୍ଞାପନ ପଛପଟେ ଅଜ୍ଞାତ କାରବାର । ପ୍ରତି ଅଫିସରେ ପ୍ରବେଶ ନିଷେଧ ମାତ୍ର ଆମେ ଅବାଧରେ ପ୍ରବେଶ କରୁଛୁ । ସମସ୍ତ ତାଲା ଝୁଲାଇ ଦେଇ ଆମେ ଆରାମରେ ଗାଡ଼ି ଚଲାଉଛୁ । ଧୂମପାନ ନିଷେଧ କରି ଆମେ ଧୂମଶିଖାରେ ଲୋକଙ୍କୁ ଅଣନିଃଶ୍ୱାସୀ କରୁଛୁ । ଦରଚାଲାଣା ଆଡ଼ୁଆଳରେ ଚଢ଼ା ଦରରେ କଣାବିକା ଚାଲିଛି । ଗୋପନୀୟ ଛାପା ମାତ୍ର ଆମେ ଗୁପ୍ତ କାରବାର ଅବ୍ୟାହତ ରଖିଛୁ । ଆଉ କେତେଦିନ ଆମେ ଏମିତି ଚତୁର ପିନ୍ଧି ଛତାକାଟି ଚାଲିଥିବୁ ? ଆମର ଏହି ବଜ୍ଞାପନମାର୍କା କାରବାର ଏକ ଯୁବଧର୍ମୀ ଦାୟୁଙ୍କ ହସ୍ତଗତ ହୋଇଛି । ସେଥିପାଇଁ ଆମେ ବାଟଭୁଲା । ଏବେ ବି ଏ ଅବସ୍ଥାକୁ ସୁଧାର ନେଇ ହେବ ।

ସବୁ କଥା ପଛକୁ ରଖି କେବଳ ଗୋଟିଏ କଥା ପ୍ରତି ଧ୍ୟାନ ଦିଆଯାଉ । ତାହା ହେଲା ଶିକ୍ଷକ ଓ ଛାତ୍ରଙ୍କ ସମ୍ପର୍କକୁ ଉନ୍ନତ କରିବା । ଫଳରେ ବଳେ ଶିକ୍ଷକ ଓ ଛାତ୍ରଙ୍କର ଗୁଣ ପରମାର୍ଜିତ ହୋଇଯିବ । ଶିକ୍ଷକମାନଙ୍କ ବ୍ୟକ୍ତିତ୍ୱ ଛାତ୍ରକୁ ପୋଲିସ୍, ମାଜିଷ୍ଟ୍ରେଟ ବା ନେତା କେହି ସଂଯତ କରାଇ ପାରିବେ ନାହିଁ । ନେତାମାନେ ଶିକ୍ଷାପ୍ରତିଷ୍ଠାନରେ ଅନଧିକାର ଉଲଙ୍ଘନ କରି ଛାତ୍ର-ଶିକ୍ଷକ ସମ୍ପର୍କକୁ ଛିନ୍ନ କରିଦେଲେ । ଫଳରେ ଛାତ୍ର ଅସଂଯତ ହେଲା । ତାହାର କୁପରିଣାମ ବର୍ତ୍ତମାନ ଅଫିସ୍‌ରେ, ରାସ୍ତାରେ, ସ୍କୁଲ କଲେଜରେ, ଦୋକାନ ବଜାରରେ, କୋର୍ଟ କଚେରୀରେ ସମାଜ ଭୋଗିବାକୁ ଆରମ୍ଭ କଲାଣି । ମହାତ୍ମା-ଗାନ୍ଧୀ ଅଳ୍ପ କେତେଦିନ ଶିକ୍ଷକତା କରି କହିଥିଲେ ଜଣେ ଶିକ୍ଷକ ଛାତ୍ରକୁ ପୁଅ ପରି ଭଲ ପାଇଲେ ସେମାନଙ୍କ ମଧ୍ୟରେ ଅନ୍ୟାନ୍ୟ ସୁଗୁଣ ସବୁ ଆପେ ଫେରି ଆସିବ । ଦୁର୍ଗୁଣପାଇଁ ଶିକ୍ଷକମାନଙ୍କରେ ପ୍ରତିହିଂସା ଜନ୍ମିବ ନାହିଁ । କ୍ଷମଣୀୟ-ମନୋବୃତ୍ତି ଧରି ସେ ନୂତନ ସଂସ୍କାର ଉପାୟ ଉଦ୍ଭାବନ କରିବେ ।

ଜଣେ ଛାତ୍ର ପରୀକ୍ଷାରେ ଫେଲ ହେଲେ ବା ନିମ୍ନଶ୍ରେଣୀ ପାଇଲେ ଶିକ୍ଷକ ବ୍ୟସ୍ତ ହେଉ, ଶିକ୍ଷକ ତାର ପ୍ରତିକାର କରୁ, ଶତକଡ଼ା ୫୦ ଛାତ୍ର ଯଦି ଶତକଡ଼ା ୨୫ ରଖି ନ ପାରିଲେ ଦେଶର ଏ ଭୟଙ୍କର କ୍ଷତି କଥା କଣ ଶିକ୍ଷକ ଚିନ୍ତା କରିପାରିବେ ନାହିଁ ? ଛାତ୍ର ଶିକ୍ଷକ ମିଳାମିଶି ତାହାର ବିଚାର କରନ୍ତୁ । ସେସବୁ କାମପାଇଁ ଯଦି ନେତାମାନେ ଆଗେଇ ଯିବେ ତାହା ହେଲେ ଶିକ୍ଷକମାନେ ଦୂରକୁ ଦୂରେଇଯିବେ । ଏହାର ପରିଣାମ ଭୟଙ୍କର । ଶିକ୍ଷକଙ୍କ ଉପରୁ ଛାତ୍ରଙ୍କର ବିଶ୍ୱାସ ତୁଟିଯିବ ଓ ଶିକ୍ଷକମାନେ ଦାୟିତ୍ୱହୀନ ହୋଇପଡ଼ିବେ ।

ଛାତ୍ର ଓ ଶିକ୍ଷକମାନେ ବାରମ୍ବାର ମିଳିତ ହୋଇ ଏହାର ବିଶ୍ଳେଷଣ କରନ୍ତୁ । ସରକାର ଓ ଅନ୍ୟ ସାମାଜିକ ସଂସ୍ଥାମାନେ ସେଥିପାଇଁ ସୁଯୋଗ ଦିଅନ୍ତୁ । ଛାତ୍ରମାନେ ନ ଭାବନ୍ତୁ ଯେ ଶିକ୍ଷକମାନଙ୍କ କାର୍ଯ୍ୟ କେବଳ ପରୀକ୍ଷା କରିବା ଓ ଖାତା ଦେଖି ଶତକଡ଼ା ଫେଲହାର ବୃଦ୍ଧି କରିବା । ଅନଟନ ପରିସ୍ଥିତି ମଧ୍ୟରେ ବାପମା'ମାନେ ପିଲାଙ୍କର ଉପଯୁକ୍ତ ଯତ୍ନ ନେଇପାରୁ ନାହାନ୍ତି । ସେମାନେ ଦି'ପଇସା ରୋଜଗାରରେ ବ୍ୟସ୍ତ । ସରକାର ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରି ସ୍କୁଲ କଲେଜ କଲେ । ବିପୁଳ ବେତନ ଓ ଉଚ୍ଚ ମହଙ୍ଗାଭତ୍ତା ଦେଇ ଶିକ୍ଷକ ନିଯୁକ୍ତ କଲେ । ସେମାନଙ୍କର କର୍ତ୍ତବ୍ୟ ହେଲା ଛାତ୍ରଙ୍କର ଦେଖାଶୁଣା କରିବା । ସେମାନଙ୍କୁ ଯେ ସୁଯୋଗ ନ ଦେଇ ସେଠି ଯଦି ନେତା ଓ ସାମ୍ବାଦିକମାନେ ମୁଣ୍ଡ ଖେଳାଇବେ ଓ ନାକ ଦେଖାଇବେ ତାହା ହେଲେ ଅବସ୍ଥା ଅଣାୟତ୍ତ ହେବ ।

ଆଶ୍ଚର୍ଯ୍ୟ କୁଳ ପରି ସାମାଜିକ ସଂସ୍ଥା ଜରିଆରେ ଶିକ୍ଷକ ଓ ଛାତ୍ରଙ୍କ ମଧ୍ୟରେ ସୁସମ୍ପର୍କ ପ୍ରତିଷ୍ଠିତ ହେଉ । ସ୍କୁଲ କଲେଜରେ ଶିକ୍ଷକମାନେ ପ୍ରତି ଛାତ୍ରର ଭଲମନ୍ଦ ବୁଝନ୍ତୁ । ଦରକାର ହେଲେ ଏଥିପାଇଁ ଅଧିକ ଶିକ୍ଷକର ବ୍ୟବସ୍ଥା ହେଉ । ଅଧିକ ସଂସ୍ଥା ଗଢ଼ା ହେଉ । ପ୍ରତି ଛାତ୍ରର ଆର୍ଥିକ, ସାମାଜିକ ଓ ମାନସିକ ଦୁରବସ୍ଥା ସହିତ ଶିକ୍ଷକ ପରିଚିତ ନ ହେଲେ ତାକୁ ସେ କିପରି ପଢ଼ାଇବେ ? ସେ ବା କ'ଣ ଗ୍ରହଣ କରିବ ? ଯୁବକ ସେ ଥରେ ବିଫଳ ହେଲେ, ହତାଶ ହେଲେ, ତା' ମନ କଥା କେହି ନ ବୁଝିଲେ ସେ ଉତ୍ତେଜିତ ଓ ଅସଂଯତ ହୋଇ ଏକ ଅନିଷ୍ଟ ଗ୍ରହ ପରି ସମାଜର ଦୁର୍ଗତି ମଞ୍ଜି ବୁଣି ଲାଗିବ । ଏକ ବିରାଟ ଅମୃତ ପାତ୍ର ମଧ୍ୟରେ କେତେ ବୁନ୍ଦା ବିଷ ହୋଇ ସେ ସମସ୍ତ ବିଷାକ୍ତ କରିଦେବ । ତେଣୁ ଅନ୍ୟମାନଙ୍କର କୁମ୍ଭୀରକାନ୍ଦଣା ବନ୍ଦ ହେଉ । ଅନ୍ୟମାନେ ଯଦି ଏଥିପାଇଁ ଏତେ ବ୍ୟସ୍ତ ସେମାନେ ଶିକ୍ଷକଙ୍କର ବା ସେମାନଙ୍କ ପରିବାରବର୍ଗଙ୍କର ଆର୍ଥିକ ଦୁରବସ୍ଥାର ପ୍ରତିକାର କଥା ଚିନ୍ତା କରନ୍ତୁ । ଯୁବଛାତ୍ରଙ୍କୁ ଏକଜୁଟ କରି ଶସ୍ତା ନେତା ହେବାର ଖିଆଲ ଛାଡ଼ନ୍ତୁ । ନେତାଙ୍କୁ ଚେତାବନୀ ନ ଦେଇ କେବଳ ଶିକ୍ଷକଙ୍କୁ ସଦାଚାର ବାଣୀ ଶୁଣାଇଲେ ତାହା ଫଳପ୍ରଦ ହେବ ନାହିଁ । ଶିକ୍ଷକ ତାହାର ଅନୁଷ୍ଠାନ ଓ ଛାତ୍ରଙ୍କ ସହିତ ସୁସମ୍ପର୍କ ରଖିଲେ, ଦଳମତଠାରୁ ଦୂରେଇ ରହିଲେ ସେ ଆପେ ସଦାଚାରୀ ହୋଇ ଉଠିବ । ଛାତ୍ର ହଜାଡ଼ ହୋଇଯିବ । ଛାତ୍ରକୁ ଉପଯୁକ୍ତ ମାର୍ଗରେ ପରିଚାଳନ କରିବା ହିଁ ଏକ ବିରାଟ ସାମାଜିକ ଦାୟିତ୍ୱ । ତାହା ମଧ୍ୟ ସହଜରେ ସମ୍ପାଦିତ ହେବ । ତାହା ହେଲେ ବାପମା ନିଶ୍ଚିନ୍ତ ହେବେ । ଦେଶବାସୀ ଅଶ୍ୱସ୍ତ ହେବେ ।

# ସ୍ଥିତାବସ୍ଥା ବିରୁଦ୍ଧରେ

ଯେ ଯେମିତି ଅଛୁ, ସେମିତି ରହିଲେ ଆମେ ତାକୁ ଜଡ଼ କହୁ । ଜୀବ ଯେମିତି ଅଛି ସେମିତି ରହିବାକୁ ଚାହେଁ ନାହିଁ । ପ୍ରତି ମୁହୂର୍ତ୍ତରେ ବଦଳିବାପାଇଁ ସେ ବ୍ୟଗ୍ର । ପରିବର୍ତ୍ତନ ହିଁ ଅଭିବୃଦ୍ଧିର ଲକ୍ଷଣ । ଅଭିବୃଦ୍ଧି ଜୀବନର ପରିଚାୟକ । ନିଜର ଅର୍ଜନ, ସମ୍ପର୍କ, ପଦବୀ ଓ ସମ୍ପତ୍ତିରେ ସନ୍ତୁଷ୍ଟ ହେବାପାଇଁ ମୁନିଋଷିମାନେ ଉପଦେଶ ଦିଅନ୍ତି । ସ୍ଥିତପ୍ରଜ୍ଞ ହୋଇ ଚଳିବା କଷ୍ଟକର ହେଲେ ମଧ୍ୟ ସାଧୁ-ସନ୍ଥମାନେ ତାହା ଏକାନ୍ତ କାମ୍ୟ ବୋଲି କହିଥାଆନ୍ତି । ଦୁଃଖରେ ଉଦ୍‌ବିଗ୍ନ ନ ହୋଇ ସୁଖପ୍ରତି ଆସକ୍ତି ନ ଦେଖାଇ ସଂସାର ନିର୍ବାହ କରିବାକୁ ଗୀତାରେ ଉଲ୍ଲେଖ ଅଛି ।

ତଥାପି ମଣିଷ ବିଚଳିତ । ଗୁଳୁଗୁଳି ହେଲେ ସେ ଝାଳ ପୋଛେ, ବିଞ୍ଚଣା ହଲାଏ । ବାଟରେ ନଈନାଳ ପଡ଼ିଲେ ନୌକାର ସାହାଯ୍ୟ ନେଇ ସେପାରିକୁ ଯାଏ । ଆଉ ଟିକିଏ ସୁବିଧା କରିବାପାଇଁ ପୋଲ ତିଆରି କରେ । ଯେଉଁ ନଈଟି କୁଳୁକୁଳୁ ହୋଇ ସ୍ୱଚ୍ଛନ୍ଦରେ ସମୁଦ୍ରରେ ପଡ଼ିବାକୁ ଧାଉଁଥିଲା ତାକୁ ବନ୍ଧ ପକାଇ ଅଟକାଇ ଦିଏ । ଏଥିରୁ ସ୍ପଷ୍ଟ ଯେ ମଣିଷ ତାହାର ସ୍ଥିତାବସ୍ଥାକୁ ବରାବର ବଦଳାଇବାକୁ ଚେଷ୍ଟା କରି ଆସିଛି । ଏ ପ୍ରକାର ପ୍ରବୃତ୍ତି ସ୍ୱାଭାବିକ ଓ ତାହା ସଭ୍ୟତାର ଆହ୍ୱାନ ; କିନ୍ତୁ କେତେ ପରିମାଣରେ ଆମେ ପ୍ରକୃତିର ରୂପ ବଦଳାଇ ପାରିବୁ ?— ମଣିଷ ନିକଟରେ ତାହାହିଁ ଏକ ବିରାଟ ପ୍ରଶ୍ନ ।

ବଡ଼ ଠାକୁରେ ଅଣସର ଘରେ । ଗୁଳୁଗୁଳି ନଷ୍ଟପ୍ରୂ ହେବ ବୋଲି ବୁଢ଼ୀମା କହୁଛି । ପାଞ୍ଜିକାର କହୁଛି, ଗଣନାନୁସାରେ ଏ ବର୍ଷ ଅଗ୍ନି ବୃଷ୍ଟି । କିନ୍ତୁ କଲିଆ ବୈଜ୍ଞାନିକମାନେ କହନ୍ତି, ମୌସୁମି ପ୍ରବାହ ଫଳରେ ହିଁ ଆମର ଏ ଅବସ୍ଥା । ବାୟୁମଣ୍ଡଳରେ ଆର୍ଦ୍ରତା ବଢ଼ିଛି । ଏଣେ ଗ୍ରୀଷ୍ମକାଳ, ଝାଳ ବୋହିଲେ ସହଜରେ ମରିବ ନାହିଁ । ହାତପଙ୍ଖା ବା ବିଦ୍ୟୁତ୍ ପଙ୍ଖା କିଛି ହେଲେ ଚାଲୁ କରିବାକୁ ହେବ । ଗୁଳୁଗୁଳି ହେଲେ କଣ କରିବାକୁ ହେବ ଆମେ ସିନା ସେ କଥା କହିଲୁ ; କିନ୍ତୁ ଗୁଳୁଗୁଳି କିପରି ନ ହେବ ତାହାର କଣ ବନ୍ଦୋବସ୍ତ ହୋଇ ପାରିବ ନାହିଁ ? ସେକଥା ଆମେ ତାତ୍ତ୍ୱିକ ଦୃଷ୍ଟିକୋଣରୁ ଆଲୋଚନା କରିପାରିବା । ମୌସୁମୀ ପ୍ରବାହକୁ ନିୟନ୍ତ୍ରଣ କରିବାକୁ ହେବ । ପବନର ଦିଗ ବଦଳାଇବାକୁ ହେବ । ମୃତ୍ତିକା ଓ ଉଦ୍ଭିଦର ପ୍ରକୃତି ବଦଳାଇବାକୁ

ହେବ । ଏମନ୍ତ କ'ଣ ଏତେ ସହଜ । ଏହା ତ ସ୍ୱୟଂ ମୃତ୍ତିକା ପ୍ରକୃତି ବିରୁଦ୍ଧରେ ସଂଗ୍ରାମ । ଆଗେ ଯିବା ନଈ କୂଳେ କୂଳେ ଅସୁବିଧାପାଇଁ ଗାଁ ଗଣ୍ଡା ବସାଇଥିଲୁ । ଏ ତ ପୂର୍ବପୁରୁଷ ଓଳଟା କଥା । ଗାଁ ଗଣ୍ଡାକୁ ନଈ ଆଣିବା କଥା ? ସ୍ଥିତାବସ୍ଥା ବିରୁଦ୍ଧରେ ଆମେ କେତେଦୂର ଯାଇପାରିବା, ତା'ର କଣ ସୀମା ନାହିଁ ? ପ୍ରକୃତରେ ତା'ର ସୀମା ନାହିଁ । ଆମ ଜ୍ଞାନ ବିଜ୍ଞାନର ସୀମା ପ୍ରସାରିତ ହେଲେ ସ୍ଥିତାବସ୍ଥା ବିରୁଦ୍ଧରେ ପ୍ରତିକାର କରିବାର ସୀମା ମଧ୍ୟ ପ୍ରସାରିତ ହେବ, ତାହା ହେଲେ ଦେଶର ଜଳବାୟୁକୁ ଆମେ ନିୟନ୍ତ୍ରିତ କରିପାରିବୁ ।

ପୃଥିବୀ ପୃଷ୍ଠରେ ଶତକଡ଼ା ୭୦ ଭାଗ ଆଜି ଜଳମଗ୍ନ । ସେଥିପାଇଁ ତଳଲୋକ ତଳ ତଳ ମାଳସିନ୍ଧୁର ଜଳ ଦେଖିଲେ ମନୁଷ୍ୟ ନିଜକୁ ବିଶ୍ୱରେ ଏକ ନଗଣ୍ୟ ବିନ୍ଦୁ ବୋଲି ବିଚାର କରୁଥିଲା । କିନ୍ତୁ ଆଜି ଆମ ଜେଟ୍‌ବିମାନ, ଜଳଜାହାଜ କ୍ଷିପ୍ର ବେଗରେ ଅତିକ୍ରମ କରୁଛି । କେବଳ ଏତିକି ନୁହେଁ ବିଜ୍ଞାନର ଏକ ଯୋଜନା ଯେ ସାଗର-ରାଜାଠାରୁ ରାଜ୍ୟ ଛଡ଼ାଇଆଣି ସେଠି ଜନବସତି ଗଢ଼ାଯିବ । ଯାହା ଦେଖାଯାଉଛି ୧୪୯,୦୦୦,୦୦ ବର୍ଗ କିଲୋମିଟରର ସ୍ଥଳଭାଗରେ ୨୦,୦୦୦,୦୦୦ ବର୍ଗ କିଲୋମିଟର ବା ସମୁଦାୟ ସ୍ଥଳଭାଗର ପ୍ରାୟ ୮ ଭାଗରୁ ୧ ଭାଗ ଆଜି ଅନୁର୍ବର କଙ୍କଡ଼ିତ ବା ଲୁଣି ମାଟିରେ ପୂର୍ଣ୍ଣ । ଜୀବଜଗତପାଇଁ ବାସୋପଯୋଗୀ ନୁହେଁ । ଏହାଠାରୁ ଆହୁରି ଅଧିକ ଅଞ୍ଚଳ ସାରାବର୍ଷ ବରଫାବୃତ ରହିଥାଏ । ଅନେକ ଅଞ୍ଚଳ ଉଷ୍ଣ ମରୁଭୂମି ବା ଶୀତ ମରୁଭୂମି ହୋଇ ପଡ଼ିରହିଛି । କେତେକ ଓଦା ଦଳଦଳିଆ ଅଞ୍ଚଳ । ମଣିଷର କଷ୍ଟ କରିବା ଦୂରେ ଥାଉ ଗମନାଗମନରେ ଅନବରତ ବାଧା ସୃଷ୍ଟି କରିଆସୁଛି । ଆମର ପୂର୍ବପୁରୁଷମାନେ ସାହାରା ମରୁଭୂମି ଛାଡ଼ି ନୀଳ ନଦୀ କୂଳେ କୂଳେ ବସତି ଗଢ଼ିଲେ । ମାଇଲ୍ ମାଇଲ୍ ଧରି ବାଲିଝଡ଼ ଉଠାଇଲା ବେଳେ କେବଳ କେତୋଟି ଖଜୁରୀ ଗଛ ତାହାର ମୁକାବିଲା କରିବାକୁ ସେଠି ଠିଆ ହୋଇ ରହିଲା । ପ୍ରକୃତିର ସେ ତାଣ୍ଡବଲୀଳା ଆମେ ସହ୍ୟ କରିପାରିଲୁନି ନାହିଁ । ବରଫପୂର୍ଣ୍ଣ ମେରୁ ଅଞ୍ଚଳରେ ପୂର୍ବପୁରୁଷ ଧଳା ଭାଲୁ ଓ କୋକ-ଶିଆଳକୁ ଛୁଡ଼ ଦେଲେ ଯେଉଁ କେତେ ଜଣ ଏସ୍କିମୋ ସେଠି କଞ୍ଚାମାଂସ ଖାଇ ବରଫ ଘର ତିଆରି କଲେ ତାଙ୍କପାଇଁ ଆମେ ଦୂରରୁ କେବଳ ଆହା ଚୁଚୁ କଲୁ ।

କିନ୍ତୁ ମଣିଷ ବେଳେ ବେଳେ ମରୁଭୂମିକୁ ଓଟ ଚଢ଼ିଗଲା । ଉଡ଼ା ଜାହାଜରେ ମରୁଭୂମି ଉପରେ ଉଡ଼ିଲା । ମନେ ମନେ ଚିନ୍ତା କଲା ଏତେ ଅଞ୍ଚଳ ବାଲୁଚର ହୋଇ ପଡ଼ିରହିବ ଅଥଚ ତେଣେ ସେ ଏକ ଜୈବିମିଲି

ଜମି ପାଇବାପାଇଁ ରକ୍ତସୁଅ ଛୁଟାଇବ ନା, ଏ ସମ୍ବନ୍ଧରେ ତାକୁ କଡ଼ା ପ୍ରତିକାର କରିବାକୁ ହେବ । ମରୁଭୂମିକୁ ଶସ୍ୟଶ୍ୟାମଳ କରିବାକୁ ହେବ । ମେରୁ ଅଞ୍ଚଳରେ ଜମାଟବନ୍ଧା ବରଫକୁ କୌଣସି ପ୍ରକାର ତରଳାଇବାକୁ ପଡ଼ିବ ।

ବାସ୍ତବିକ ଆମର ସବୁଜସୁନ୍ଦର ପୃଥିବୀରେ କଣ ନାହିଁ ? ଶସ୍ୟକ୍ଷେତ୍ର ହସୁଛି । ନୀଳ ସମୁଦ୍ରରେ ଶହ ଶହ ଢେଉ ନାଚୁଛି । ହ୍ରଦର ଗମ୍ଭୀର ହୃଦୟ ଫଟାଇ ପଲ ପଲ ଚଢ଼େଇ ଆନନ୍ଦରେ ଚିତ୍କାର କରି ବୁଲୁଛନ୍ତି । ହଳିଆ ଭାଇର ଗୀତ ଶୁଣିବାକୁ ଦୂରରେ ପାହାଡ଼ଟା ଯେପରି କାନଡେରି ଠିଆ ହୋଇଛି । ସେଥିପାଇଁ ରବି ଠାକୁର ଗାଇଥିଲେ "ମରିତେ ଚାହିନା ଆମି ଅମର ଭୁବନ" । ଦୁନିଆର ହସ କାନ୍ଦ ଭିତରେ ହସି କାନ୍ଦି ବଞ୍ଚିବାପାଇଁ ସେ ବ୍ୟାକୁଳ ହୋଇ ଉଠିଥିଲେ ; କିନ୍ତୁ ହସ କାନ୍ଦ ଭିତରେ ତ ଅନେକ ବ୍ୟବଧାନ । ଏ ବ୍ୟବଧାନ କ'ଣ ଏମିତି ଚିରଦିନ ଲାଗି ରହିବ ? ଯେ ହସୁଛି ହସୁଥିବ, ଯେ କାନ୍ଦୁଛି ସେ କାନ୍ଦୁଥିବ ? ଯେ ଧାର ଧାର ଲୁହ ଗଡ଼ାଉଛି ତା' ଓଠରେ କ'ଣ ହସ ଫୁଟିବ ନାହିଁ ? କାହାର ମାଟିତଳେ ଅପର୍ଯ୍ୟାପ୍ତ ଖଣିଜ ରହିଛି ତ କାହାର ମାଟିତଳେ ଖାଲି ମାଙ୍କଡ଼ା ପଥର । ଜଣେ ମାଟିତଳ ସୋତାମାଲ ପାଇ ହସୁଥିବ ତ ଆଉ ଜଣେ ଲହୁ ଲୁହ ଧାର ଗଡ଼ାଇ ଖାଲି ମାଟିରେ ଲୋଟିବ ? ସେଥିପାଇଁ ସ୍ଥିତାବସ୍ଥା ବିରୁଦ୍ଧରେ ଦରକାର ସଂଗ୍ରାମ । ଏଥିପାଇଁ ହାତହତିଆର ଦରକାର ନାହିଁ । ପରର ଚୋଟି ଚିପିବାକୁ ପଡ଼ିବ ନାହିଁ କି ବଳତ୍କାର ଲୁଣ୍ଠନ ହେବ ନାହିଁ । ତାହା ହେଲେ କ'ଣ ହାତପାତି ଭିକ ମାଗିବାକୁ ହେବ ? ନା' ତାହା ବି ନୁହେଁ ।

ବିଜ୍ଞାନରକଳ କୌଶଳ ଖଟାଇ ଆମକୁ ପୃଥିବୀର ନକ୍ସା ବଦଳାଇବାକୁ ପଡ଼ିବ । ହ୍ରଦ-ସମୁଦ୍ର ତଳେ ରେଳଗାଡ଼ି ଛୁଟିବ । ସାହାରାର ଫସଲ ହସିବ । ଏସ୍କିମୋର ବରଫ କୁଟୀରରେ ବିଜୁଳିବତି ଜଳିବ । ଆମ ସବୁଜ ସୁନ୍ଦର ପୃଥିବୀର ସବୁଆଡ଼େ ସମତାର ସୁଅ ଛୁଟିବ । ମରୁଭୂମି, ଶସ୍ୟକ୍ଷେତ୍ର, ଜଙ୍ଗଲ, ପାହାଡ଼, ହ୍ରଦ, ସମୁଦ୍ର କୌଣସି ଅଞ୍ଚଳ ଅଗମ୍ୟ ହୋଇ ରହିବ ନାହିଁ । ମଣିଷର ହିତପାଇଁ ପୃଥିବୀର ନକ୍ସା ବଦଳିଯିବ । ଗୁଳିଗୁଳାପାଇଁ ଦିନେ ଆମେ ଖାଲି ବଞ୍ଚଣା ବୁଲାଉଥିଲୁ । ଆଜି ବିଜୁଳିପଙ୍ଖା ଘୂରିଲା । ଆସନ୍ତା କାଲି ଗୁଳିଗୁଳା ହେବ ନାହିଁ । ସ୍ଥିତାବସ୍ଥା ବିରୁଦ୍ଧରେ ସୁଚିନ୍ତିତ ଯୋଜନା ।

— — —